# ଉତ୍କଳ-ସାରସ୍ୱତ-ପ୍ରତିଭା



କୁମାରୀ ବିଦ୍ୟୁତ୍‌ପ୍ରଭା

# ଉତ୍ସର୍ଗ



'ସମାଜ' ସଂପାଦକ

**ଶ୍ରୀଯୁକ୍ତ ରାଧାନାଥ ରଥ,**

କରକମଳେଷୁ.

ରାଜନୀତି-ବିଶାରଦ, ଶ୍ରେଷ୍ଠ ସଂପାଦକ
ଗୋପବନ୍ଧୁ ପ୍ରିୟଶିଷ୍ୟ, ପ୍ରଜ୍ଞାର ବାନ୍ଧବ,
ତାର୍କିକ, ଉତ୍କଳ ଜାତି-ସଂଗ୍ରାମର ଦୃପ୍ତ
ନିଃଶଙ୍କେ ନିଃସ୍ୱାର୍ଥେ ଗାଇଥାନ୍ତି ଯେଉଁ ସୁର,
ଜଳାଇ ଯେ ରଖିଛନ୍ତି ଜାତି-ଶୁଭ-ଦୀପ,
ଥୁଏ ଏହି ଭେଟି ତାଙ୍କ ଶ୍ରୀକର ସମୀପ ।

ଆପଣଙ୍କର

ଗୁଣମୁଗ୍ଧା

**କୁମାରୀ ବିଦ୍ୟୁତ୍‌ପ୍ରଭା**



'ସମାଜ'ର ସମ୍ପାଦକ ଓ ଲୋକସେବକ ସମାଜର ସଭ୍ୟ

ସ୍ୱଦେଶପ୍ରେମିକ ପଜାହୃଦ ଶ୍ରୀଯୁକ୍ତ ରାଧାନାଥ ରଥ

କରକମଳେଷୁ

# ଅଭିମତ



ସୁଲେଖକ ଶ୍ରୀ ନିମାଇଁଚରଣ ଦାସଙ୍କ କନ୍ୟା କୁମାରୀ ବିଦ୍ୟୁତ୍‌ପ୍ରଭାଙ୍କର 'ଉତ୍କଳ-ସାରସ୍ୱତ-ପ୍ରତିଭା'ର କବିତା କତିପୟ ପାଠ କରି ଆନନ୍ଦିତ ହେଲି । କବିତାଗୁଡ଼ିକର ଭାଷା ଯେପରି ସରଳ ଓ ପ୍ରାଞ୍ଜଳ, ବର୍ଣ୍ଣନା ମଧ୍ୟ ସେହିପରି ସରସ ଓ ସୁଖପ୍ରଦ । କୁମାରୀ ବିଦ୍ୟୁତ୍‌ପ୍ରଭା ଉପଯୁକ୍ତ ପିତାଙ୍କର ଉପଯୁକ୍ତ କନ୍ୟାରୂପେ ଉତ୍କଳସାହିତ୍ୟକ୍ଷେତ୍ରରେ ଏହି ରଚନା ଦ୍ୱାରା ନିଜର ପରିଚୟ ନିଜେ ଦେଇଛନ୍ତି । ଉପଯୁକ୍ତ ସାଧନା ବଳରେ ତାଙ୍କର ଲେଖନୀ ସିଦ୍ଧି ଲାଭ କରିବ ବୋଲି ମୁଁ ଆଶା କରେଁ ।

କାଳନ୍ଦୀଚରଣ ପାଣିଗ୍ରାହୀ

ତା ୫ । ୬ । ୧୯୪୭

କଟକ

# ପ୍ରଥମ ସଂସ୍କରଣର ଭୂମିକା



'ଉତ୍କଳ-ସାରସ୍ୱତ-ପ୍ରତିଭା' ପୁସ୍ତିକାରେ ସନ୍ନିବେଶିତ କେତୋଟି କବିତା ବର୍ଷକ ପୂର୍ବରୁ ଲେଖିଥିଲି । ଗୃହକର୍ମର ଅବ୍ୟାହତି ପରେ ମିଳୁଥିବା ସ୍ୱଳ୍ପ ଅବସର ଭିତରେ କବିତାଗୁଡ଼ିକ ଲେଖା । ପରେ ଲେଖାଗୁଡ଼ିକ ମୋର ପରମାରାଧ୍ୟ ପିତୃଦେବଙ୍କର ଦୃଷ୍ଟିଗୋଚର ହୁଅନ୍ତେ ସେ ମୋତେ ଉତ୍କଳଦେଶର ସମସ୍ତ ସ୍ୱନାମଧନ୍ୟ ଲବ୍ଧପ୍ରତିଷ୍ଠ ବାଣୀବରପୁତ୍ର ଓ ସେବକମାନଙ୍କ ସମ୍ବନ୍ଧରେ କିଛି ଲେଖିବାକୁ ନିର୍ଦ୍ଦେଶ ଦେଇ ସବିଶେଷ ଉତ୍ସାହିତ କରିଥିଲେ । ତାହାଙ୍କର ଉତ୍ସାହ ଅତିଶଯ୍ୟହିଁ ମୋର ଏ ରଚନାର ମୂଳପିଣ୍ଡ ।

ସମ୍ପର୍କରେ ମୋର ପିତୃପ୍ରତିମ, କବି ଓ ସାହିତ୍ୟିକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର ମହାଶୟ ମୋର କବିତାଗୁଡ଼ିକ ଦେଖି ତହିଁର ନାନା ସ୍ଥାନ ପରିବର୍ତ୍ତନ ଓ ପରିବର୍ଦ୍ଧନ କରିବାର ସୂଚନା ଦେଇ ଏବଂ ପିତୃସୁଲଭ ଅକପଟ ସ୍ନେହ ଓ ସହାନୁଭୂତି ପ୍ରଦର୍ଶନ କରି ମୋତେ ଆଜୀବନ କୃତଜ୍ଞତାପାଶରେ ଆବଦ୍ଧ କରିଅଛନ୍ତି । ତାହାଙ୍କର ଏ ଅଖଣ୍ଡ ଋଣ ପରିଶୋଧର କଳ୍ପନା ମୋ ପକ୍ଷରେ ଧୃଷ୍ଟତା ଛଡ଼ା ଆଉ କିଛି ନୁହେଁ । ଇତି ।

କଟକ
ତା ୫ । ୬ । ୧୯୪୭ — ଲେଖିକା

# ଦ୍ୱିତୀୟ ସଂସ୍କରଣର ଭୂମିକା



ଦରିଦ୍ର ଉତ୍କଳରେ କୌଣସି ଏକ କବିତା ପୁସ୍ତକର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାକୁ ଯିବା ସମୟରେ ଲେଖକ ବା ଲେଖିକାର ହୃଦୟ ଉଲ୍ଲସିତ ହେବା ସ୍ୱାଭାବିକ । କବି ବିଶ୍ୱ ସହିତ ନିଜର ସତ୍ତା ମିଳାଇଦେଇ ଯେଉଁ ଅପୂର୍ବ ଆନନ୍ଦ ଅନୁଭବ କରେ, ଭାଷାରେ, ଛନ୍ଦରେ ତାହାର ପ୍ରକାଶ ପାଇଁ ସେ ଉତ୍ସୁକ ହୋଇପଡ଼େ କାହିଁକି ? —କାହିଁକି ସେ ନିଜର ସମସ୍ତ ଦୈନ୍ୟ, ଯାତନା ଭୁଲିଯାଇ ଲେଖନୀ ଧରି ବସେ ? ଆଉ କୌଣସି ଆକାଙ୍‌କ୍ଷା ତାର ହୃଦୟରେ ଥାଏ ନାହିଁ—ଥାଏ କେବଳ ଏହି ଆକାଙ୍‌କ୍ଷା ଯେ, ଯେଉଁ ନରନାରୀମାନଙ୍କୁ ନେଇ ସେ ବଞ୍ଚିଛି, ସେମାନେ ତାହାର ଆନନ୍ଦରେ ପ୍ରାଣ ଉଦ୍‌ବୁଦ୍ଧ କରିବେ ଏବଂ ତାହାରି ସହିତ ଏକ ହୋଇ ବିଶ୍ୱକୁ ଉପଲବ୍‌ଧି କରିବେ । 'ଉତ୍କଳ-ସାରସ୍ୱତ-ପ୍ରତିଭା'ର ପ୍ରଥମ ସଂସ୍କରଣ ନିଃଶେଷ ହୋଇଯିବାରୁ ଲେଖିକାର ମନରେ ଏହି ବିଶ୍ୱାସ ଜନ୍ମିଛି ଯେ, ଏହା ସୁଧୀସମାଜର ପ୍ରୀତିପ୍ରଦ ହୋଇପାରିଛି । ଏଣୁ ତାର ମନେ ହେଉଛି, ଆଜି ତାର ନିଭୃତ ଆକାଙ୍‌କ୍ଷା ପୂର୍ଣ୍ଣ ହୋଇଛି ।

ଏହି ଦ୍ୱିତୀୟ ସଂସ୍କରଣରେ ସ୍ଥାନେ ସ୍ଥାନେ ପରିବର୍ତ୍ତନ କରାଯାଇଛି । ଲେଖିକାର ଆଶା, ଆଜିପର୍ଯ୍ୟନ୍ତ ଏ ପୁସ୍ତିକା ଖଣ୍ଡିକ ପାଠକ ପାଠିକାମାନଙ୍କ ନିକଟରେ ଯେଉଁ ଆଦର ଲାଭ କରିଆସିଛି, ତାହା ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହେଉ ।



ଅଗରପଡ଼ା

ତା ୭ । ୭ । ୧୯୫[illegible]

ଲେଖିକା

# ସୂଚୀ



## ଶୂଦ୍ରମୁନି ସାରଳା ଦାସ

ବାଣୀ-ବରପୁତ୍ର ସାଧକ ନମି !
ଯେ ମଧୁର ଭାବ ଦେଲ ବରଷି
ପୁଣ୍ୟ-ପ୍ରବନ୍ଧ ଉତ୍କଳ-କାନନେ
ପାଷାଣ ଥିଲା ସେ ମଧୁ ଟାଟନ
ରଚନ୍ତ 'ମହାଭାରତ'
ପାପପଙ୍କିଲ ଏ ଉତ୍କଳ-ସାଗରେ
ଭସାଇଲ ଧର୍ମପୋତ ।

ତୁମ ତତ୍ତ୍ୱବାଣୀ ଶ୍ରବଣେ ବାଜି
ଜଡ଼ ଦେହେ ପ୍ରାଣ ସଂଚରେ ଆଜି ।
ସୁନ୍ଦର ସରଳ ମୋହନ ଛନ୍ଦେ
ଭରିଉଠେ ଚିତ୍ତ ନବ ଆନନ୍ଦେ
ଶୁଣି ତବ ଧର୍ମତତ୍ତ୍ୱ
ଶ୍ରବଣ ସାର୍ଥକ କରନ୍ତି ନାସ୍ତିକ
କିବା ଅଜ୍ଞ ବିଜ୍ଞ ଜନ୍ତୁ ।

ଧରମ-କେତନ ଉଡ଼ାଇ ତୁମେ
ପୁରାଣ-ପ୍ରସିଦ୍ଧ ଉତ୍କଳଭୂମେ
ପ୍ରତି ସ୍ମୃତି ତଳେ ରହିଲ ଜାଗି
ରଚି ଏହୁ ମୂଢ଼ ମାନବ ଲଗି
  ସୁମଧୁର ପଦାବଳୀ
ହୃଦ-ସାଗରର   ପାଣ୍ଡିତ୍ୟ ଗଭୀର
  କେ ପାରଇ ତୁମ କଳି ?

ଅସାମାନ୍ୟ ତୁମ ପ୍ରତିଭା ବଳେ
ପ୍ରକଟାଇ ଗଲ ଭାବର ଛଳେ
କି ମଧୁ ସୁବୋଧ୍ୟ ସରଳ ଭାଷା
ଗାଇବ ତା କାଳେ କାଳେ ଓଡ଼ିଶା
  କରିଗଲ ଯାହା ଦାନ
ଧନ୍ୟ କବି ତୁମ   କଳ୍ପନାବିଳାସ
  ଅବର ବିଷୟଜ୍ଞୀନ ।

ଉତ୍କଳ-ଜାତିକୁ ପ୍ରେରଣା ତବ
ନିଯୁତ ଉଦ୍ବୁଦ୍ଧ କରୁଛି ଦେବ !
ଅଦ୍ଭୁତ କରଣୀ ତବ ମନୀଷି
ଅଚିରେ ଜାଗନ୍ତୁ ଏ ଦେଶବାସୀ
  ତବ ଯଶୋଗାନ କରି
ତବ ପୁଣ୍ୟ କୀର୍ତ୍ତି   ଖେଳିଯାଉ ଦେଶେ
  ନନ୍ଦନ-ସୁବାସ ପରି ।

## ବଳରାମ ଦାସ

କିଏ କହେ ମରିଅଛନ୍ତି ବଳରାମ ଦାସ
ଯା କୀର୍ତ୍ତିଗାନେ ମୁଖରି ଉଠଇ ଏ ଦେଶ
ସେ କି କେବେ ମୃତ୍ୟୁପାଖେ ହାରିପାରେ ପ୍ରାଣ
ରଚିଲେ ଯେ ସୁବିରାଟ ପୁଣ୍ୟ 'ରାମାୟଣ' ?

ଓଡ଼ିଆଜାତିର ଧର୍ମ-ଜୀବନ-ବଲ୍ଲରୀ
ପଲ୍ଲବିତ ଲଗି ତୁମ ଚିନ୍ତା-ତତ୍ତ୍ୱ-ବାରି
ତୁମରି ରଚନାବଳୀମଧ୍ୟେ ତପୋଧନ !
ବର୍ତ୍ତିଅଛି ଉତ୍କଳର ଭାଷା ଚିରଦିନ ।

ଯେ ଅମୂଲ୍ୟ ରତ୍ନରାଜି କଲ ତୁମେ ଦାନ
ଭୁଲି ତା ପାରିବ କାହିଁ ଉତ୍କଳ-ସନ୍ତାନ ?
ସୁବୋଧ ଭାଷାରେ ଧର୍ମ ଜଟିଳ ସମସ୍ୟା
କି ଶକତି ବଳେ ରଚିଗଲ ମହାଯଶା !

ପୁନରପି ତୁମ ସମ କଠୋର ସାଧକ
ମଣ୍ଡି ନାହିଁ କେହୁ ଦେଶଜନନୀର ଅଙ୍କ
କା ମୁଖକମଳୁଁ ପୁଣ୍ୟ ଗୀତା ମନ୍ତ୍ରରସ
ତବ ତିରୋଧାନେ ଶୁଣି ନାହିଁ ଏହୁ ଦେଶ ।

କେହି ବାଲ-ବୃଦ୍ଧ-ଯୁବା ଭକ୍ତ ମନ କିଣି—
ନେଇ ପାରି ନାହିଁ କବି ତୁମକୁ ଦେହ ଜିଣି
ଯାବତ ପାଇବ ଲୋପ ଉତ୍କଳର ନାମ
ତାବତ ବର୍ତ୍ତିବ ତୁମେ ଭକ୍ତ ବଳରାମ

# ଭକ୍ତକବ ଜଗନ୍ନାଥ ଦାସ

ଉତ୍କଳର ବ୍ୟାସକବ ଭକ୍ତ ଜଗନ୍ନାଥ !
ପ୍ରଗୁଟଲ ଲୋକମୁଖେ ଯେଉଁ ଭାଗବତ
ପୁରାଣୁ ଉଦ୍ଧାର ନାନା ଗୂଢ଼ ଉପାଖ୍ୟାନ
ଦେଶର ଘରେ ଘରେ ଆଜ ତାହା ଆଦରର ସମ୍ମାନ ।

ଦୁର୍ଘଥ ଚଳନ୍ତି ଯେହ୍ନେ କରଏ ନିବୃତ୍ତ
କ୍ଲାନ୍ତ ଅବସରେ ପ୍ରାଣେ ଢାଳ ଦବ୍ୟ ଶାନ୍ତ
ଯେ ମଧୁର ଦୋହାବଳୀ କର ଅନୁଭବ
ବୁହାଏ ନାସ୍ତିକ ହୃଦେ ବନ୍ଧୁ-ପ୍ରେମଧାରା—

ଯେ ଅଧାରୁଁ କର ପାନ ତତ୍ତ୍ୱ-ଜ୍ଞାନାମୃତ
ଲଭନ୍ତି ସ୍ୱର୍ଗୀୟ ପ୍ରମୋଦ ଧାର୍ମିକ ଉନ୍ନତ
ସେହି ଗୀତବାଣୀ ଶିଶୁ ଗାଏ ଗୃହଶାଳେ
ପଞ୍ଚାୟତେ ବୃଦ୍ଧ ପୁଣି ଚଷା ବଳ ମାଳେ ।

ସୁରମ୍ୟ ପ୍ରାସାଦେ କବା ନିରଳ କୁଟିରେ
'ଭକ୍ତେ ବପ୍ର ଜଗନ୍ନାଥ' ଉଠେ ସମସ୍ୱରେ
କରନ୍ତି ଦରିଦ୍ର ଧନୀ ଚଣ୍ଡାଳ ବ୍ରାହ୍ମଣ
ବାଟରେ ଘାଟରେ ତବ ମହିମା କୀର୍ତ୍ତନ ।

ଧର୍ମ-ମାନଦଣ୍ଡ ଯେବେ ହୋଇଲା ରହିତ
ନିହିତ ତା ମୂଳେ ତବ ପୁଣ୍ୟ ଭାଗବତ
ଭାରତ-କୋଣାର୍କ-ଶୀର୍ଷେ ହୋଇ ସମାସୀନ
ଏ ଜାତିଠୁଁ ପୂଜା ପାଉଅଛ ଚିରଦିନ ।

ସୁଲଳିତ ଛନ୍ଦେ ଛନ୍ଦେ ଭାଷା-ମନ୍ଥରତା
ପ୍ରଚ୍ଛନ୍ନେ ରହିଛନ୍ତି ମିଶି ଦୁଗ୍ଧେ ଘୃତ ଯଥା
କର୍ଣ୍ଣ-ତୃପ୍ତ ସ୍ୱାଦ ଯାର କରି ଆସ୍ୱାଦନ
ଅପୂର୍ବ ଉଲ୍ଲାସ ଲଭୁଥାନ୍ତି ସନ୍ଥଜନ ।

ଅଦ୍ଭୁତ ସାଧନ ବଳେ ବେଦ-ସିନ୍ଧୁ ମନ୍ଥି
ବାଛି ଏକ ସୁବିଶାଳ ଅମୃତ ବିଭୂତି
ଜଗତି ହାତେ ଦେଲେ ଦ୍ୱିତୀୟ ବ୍ୟାସ-ତପୋଧନ !
ପ୍ରତ୍ୟକ୍ଷରେ ନର ଦେହେ ଜଣିଛ ଏମନ ।

## କବିସମ୍ରାଟ୍ ଉପେନ୍ଦ୍ର

ଶୁଭକ୍ଷଣେ ଜନ୍ମି ହେ କବିସମ୍ରାଟ
ସାହିତ୍ୟରାଜ୍ୟକୁ ଦେଖାଇଲ ବାଟ ।
ତବ କବିତାର ରସମୟ ଛନ୍ଦ
ଯୋଗୀର ଜୀବିକା ଭୋଗୀର ଆନନ୍ଦ ।
ରସିକକୁଳର ହୃଦୟ ମଣ୍ଡନ
ପଣ୍ଡିତମଣ୍ଡଳୀ ଜୀବର ଜୀବନ ।
ତୁମ ଛନ୍ଦ ଗୁରୁ ବିଳାସ ଶୟନେ
ପ୍ରିୟ ଛବି ଅଙ୍କେ ପ୍ରେୟସୀନୟନେ ।
ଛତିଶ ବଟର ଛାଇ ତଳେ ବସି
ଗୋପ ବେଣୁ ସେହି ଛନ୍ଦେ ଉଠେ ରସି ।
ଉଲ୍ଲସାଇ ସୁନାରଞ୍ଜି ସଞ୍ଜହୁଆ
ସେଇ ଛନ୍ଦ ଗାଇ ବାହୁଡେ ହଳିଆ ।
ପାହାନ୍ତି ପବନେ ମିଠା ଗଳା ଝାଡ଼ି
ଶଗଡ଼ିଆ ସେହି ରାଗ ଧଏ ଛାଡ଼ି ।
ବାଦୀ ପାଲି ଦଳେ ଭଞ୍ଜ ବୀର ନାଆଁ
ମୁଖରିତ ଆଜି କରେ ପଲ୍ଲୀ ଗାଆଁ ।

ବିଳାସ ତ୍ୟାଗର ନିଦର୍ଶନ ତୁମେ
ରାଜପରିବାରେ ଏ ଭାରତଭୂମେ
ତେଜି ସୁବିଶାଳ ରାଜ୍ୟ ରାଜଛତ
ବାଣୀପଦେ ଯେଣୁ ଢାଳିଦେଲ ମତ ।

ଜଗିଥିଲେ ତୁମେ ଆଠ ପ୍ରହର
ରଖିଥାନ୍ତା କିଏଁ ବା ତୁମ ଖବର ?
ବଶିଷ୍ଠ ହେଥି ତବ କାବ୍ୟ ଅଭିଯାନ
'ଧୂମ୍ରସର' ଅଣା କଲ ଯା ବର୍ଜନ ।
ମୁକୁଠ ପିପାସା ଥିଲେ ତବ ଗଦ୍ୟେ
ଗୋଦାବରୀ ଠାରୁ ବିସ୍ତୃ ପଦ୍ମା ଯାଏ
ଆଜି ଏ ମହାନ କୀର୍ତ୍ତି-ଇତିହାସ
କାଳ-ବକ୍ଷେ ଲଭି ନ ଥାନ୍ତା ବିକାଶ ।
ଜନ୍ମରେଁ ନ ଥାନ୍ତେ ଦେବୀ ବାଗୀଶ୍ୱରୀ
ରସାର୍ଣ୍ଣବ 'କୋଟି-ବ୍ରହ୍ମାଣ୍ଡ-ସୁନ୍ଦରୀ' ।

ବଳିଷ୍ଠ ଲେଖନୀଆରେ ବରଙ୍କର
'ବୈଦେହୀଶେ' ଉଦ୍ଭିଗଲ ଯେଉଁ ଛବି
ବାଣୀର ଅମୋଘ ଶୁଭାଶିଷ ବଳେ
ଧନ୍ୟ ଧନ ତାର ଦିବ୍ୟ-ଜ୍ୟୋତି ଝଳେ ।

# କବିସୂର୍ଯ୍ୟ ବଳଦେବ

ରସର ଜାହ୍ନବୀସ୍ରୋତେ
ବୈଦଗ୍ଧ୍ୟ-କାଳିନ୍ଦୀ ସଙ୍ଗମ
ସମ୍ଭବ କରିଛ କବି !
ସଂଦେ ତବ ନମୋ ନମୋ ନମଃ ।

ଅପରୂପ କାବ୍ୟ ତୁମେ
ଦେଇଛ ଯେଉଁ ଓଡ଼ିଆ ସଙ୍ଗୀତେ
ଅମୃତ ଢାଳିଛି ସେହୁ
ଯୁଗ ଯୁଗ ଶ୍ରବଣ ଓ ଚିତ୍ତେ ।

ଷଡ ଚିନ୍ତା ଚଉଁ ସ୍ୱର
ମୂର୍ଚ୍ଛନା ତା ମୋହନ ଆବେଶେ
ମାନସ ଭସାଇ ନିଏ
ପ୍ରେମପ୍ଳୁତ ଅତୀନ୍ଦ୍ରିୟ ଦେଶେ ।

'ଚମ୍ପୂ'ର ଜଗତେ ତୁମେ
ବୁଝାଇଛ ଯେ ନିବେଣୀଧାସ
ଉଚ୍ଛ୍ୱାସେ ପ୍ଲାବିତ ସେହୁ
କାବ୍ୟମୟ ଏ ଉତ୍କଳ ସାସ ।

ବନ୍ଧୁର ଦୁର୍ଗମ୍ୟ ପଥେ
କଣ୍ଟକିତ ପ୍ରେମ-ସ୍ୱକ୍ୟବଣେ
କଟିଛି ସ୍ୱର୍ଗୀୟ କେବା
ନିତ୍ୟ'ବଳେ ତୁମ ପର ଜଣେ ?

ଅନାବିଳ ପ୍ରଣୟର
ମହନୀୟ ଗୂଢ଼ ତଥ୍ୟମଣି
ଅଚିନ୍ତ୍ୟ କଳ୍ପନା କାର
ତୁମ ସମ ପାରନ୍ତି ପ୍ରକାଶି ?

ପ୍ରେମର ମୌକ୍ତିକ-ହାରେ
ଝଲସାଇ ରସ-ରତ୍ନାକର
ଭାସ୍ୱର ରହିଛ ଚିର
କାବ୍ୟ-ନଭେ ହେ କବି-ଭାସ୍କର !

# ଅଭିମନ୍ୟୁ ସାମନ୍ତସିଂହାର

ଭାରତୀ-ଉଦ୍ୟାନ— ବିହାର-ରସିକ
ମଧୁପାୟୀ ମଧୁଲିଟ୍ ।
ତୁମ ଦାନେ ଆଜ ଗୁରୁ ଗୌରବିତ
ଉତ୍କଳ-ଶାରଦା-ପୀଠ ।
ଭାଷାର ବସନ୍ତ ତୁଙ୍ଗ କୋଣାରକ
ଭାବର ଅଗାଧ ଖଣି
ସ୍ୱର୍ଗୀୟ ଲଳିତ ପ୍ରେମ-ସମ୍ବଳିତ
'ବିଦଗ୍ଧଚିନ୍ତାମଣି' ।
ଏକ ସୂତ୍ରେ ଯଥା ଗ୍ରଥିତ ବିଶୁଦ୍ଧ
ସ୍ୱର୍ଣ୍ଣ ସଙ୍ଗେ ଶୁଭ୍ର ମୋତି
ଭାଷା-ଅଙ୍ଗେ ତଥା ଭାବଟି ତୁମର
ଫୁଟାଇଛି ଦିବ୍ୟ ଜ୍ୟୋତି ।
ଉପେନ୍ଦ୍ର, କବିସୂର୍ଯ୍ୟ, ଗୋପାଳକୃଷ୍ଣଙ୍କ
ଅଳଙ୍କାର, ପଦ, ଭାବ
ତ୍ରିବେଣୀ-ସଙ୍ଗମ ସମ ଏକାଧାରେ
ଲଭିଅଛି ତହୁଁ ଠାବ ।
ବନ୍ଦେ ପଦ ତବ ସାମନ୍ତସିଂହାର
ଭକତ-ଅରଘ ଥାଳି
ଶାରଦା-ମନ୍ଦିରେ ରତନ-ପ୍ରଦୀପ
କି ଲଗନେ ଗଲ ଜାଳି ।
ତେଜି ନରଦେହ ରହିଛ ସଜୀବ
କୋଟି କବିପ୍ରାଣତଳେ
ତୁମରି ମୂର୍ଚ୍ଛନା ତୁମରି ଉଚ୍ଛ୍ୱାସ
ଅରୂପ ଭଙ୍ଗିତ ଥାଳେ ।

# କବି ଦୀନକୃଷ୍ଣ

ବରେଣ୍ୟ ଭକତ ତୁମେ ଦୀନକୃଷ୍ଣ ଦାସ
କଳ୍ପନା-କୁସୁମ ଭରା ବାଣୀ-ଉପବନେ
ଧନ୍ୟ ତବ ପ୍ରତିଭାର ମଳୟ ଉଲ୍ଲାସ
ଖେଳାଇଲା ବସନ୍ତ ଯା କାବ୍ୟ-କୁଞ୍ଜସ୍ୱନେ ।

କି ମହା ଶକତିବଳେ କି ଦିବ୍ୟ ନୟନେ
ନିରେଖିଲ ସ୍ୱପ୍ନସ୍ୱର୍ଗ ବ୍ରଜଭୂମି କବି !
ନିରେଖିଲ ଯମୁନାର ନୀର-ଦରପଣେ
ନୀପକୁଞ୍ଜ-ଦୋଳାୟିତ ବଂଶୀଧାରୀ ଛବି ।

କି ସୁଯୋଗେ ଶୁଣି କବି ! ବିମୁଗ୍ଧ ସପନେ
ନିଖିଳହୃଦଦ୍ରୈବ କାନ୍ତ ବେଣୁ-ବାଣୀ
ପ୍ରକାଶିଲ ରସମୟ ଲଳିତ ରଚନେ
ଶ୍ରୀକୃଷ୍ଣ-ପ୍ରଣୟ-ଲୀଳା-ସ୍ୱର୍ଗୀୟକାହାଣୀ ।

ସୁଷମାର ଗଳଛଁ ନି ତବ କାବ୍ୟ-ବନ
ନୟନେ କରାଏ ଦିବ୍ୟ ଛବି ରେଖାପାତ
ଗୃହଗାର କାଳିନ୍ଦୀର ମୃଦୁଳ ଦୋଳନ
ଗୋବର୍ଦ୍ଧନ-ଚୂଡ଼ା ଅସ୍ତ-ପାଟଳିମା-ସ୍ନାତ ।

ଅବା କାହିଁ ଶ୍ୟାମାୟିତ ବିସ୍ତୀର୍ଣ୍ଣ ପ୍ରାନ୍ତରେ
ତୃଣାଙ୍କୁର-ଭକ୍ଷରତ ଧେନୁ ଅଗଣିତ
କହ ଶିଳ୍ପୀ ! ଆଙ୍କିଗଲ୍ କି ଅମୃତ କରେ
ବିସ୍ମୟେ ଭରଇ ଯାହା ବିଶ୍ୱଜନଚିତ୍ତ ।

ସୁଦକ୍ଷ ତୂଳୀରେ ଛବି ଯେଉଁ ଯୁଗ ବ୍ୟାସ
ବିରଚିଲ ରସକାବ୍ୟ ସୁଭଗ ସୁନ୍ଦର
ଛନ୍ଦେ ଛନ୍ଦେ ସେ ମଧୁର ତରଳ ଉଚ୍ଛ୍ୱାସ
କୋଟି ପ୍ରାଣେ ଉଚ୍ଛୁଳାଏ ଆନନ୍ଦ-ନିର୍ଝର ।

ଯେ ଶୋଭା-ସମ୍ପଦ ତାଳ ବଲ୍ଲକୃପାବଳେ
ଯୁଗ-କଣ୍ଠେ ନିନାଦିଲ ଶ୍ରୀକୃଷ୍ଣମହିମା
ଲଙ୍ଘିଛି ଯେସନେ ତାହା ଦୁର୍ଲ୍ଲଭ କୌଶଳେ
କାବ୍ୟ-ତାଜମହଲର ପଠାନ୍ତର ସୀମା ।

'ରସକଲ୍ଲୋଳ'ରେ କବି ବିଶ୍ୱ-ହୃଦ ଜୟ
ଦେଲ୍ ଯାହା ହେ ସାଧକ କର୍ମୀ ନିରଳସ !
ତା ମଧ୍ୟେ ଜୀବନ ତବ ରହୁଛି ଅକ୍ଷୟ
କାବ୍ୟ ସେ ନୁହଇ ତାହା ଖାଲି ଦିବ୍ୟରସ ।

## ପ୍ରକୃତ କବି ରାଧାନାଥ

କବିକୁଳଗୁରୁ ଅହେ ରାଧାନାଥ
ସାହିତ୍ୟ-ଗଗନ-ରବି !
ତୁମ ଯୋଗେ ଦିନା ରୂପାୟିତ ହେଲା
ଉତ୍କଳପ୍ରକୃତି-ଛବି ।

କି ଶୁଭ ଲଗନେ ଜନମି ଏ ଭୂମେ
ବିନାୟକ ଅବତାର !
ବାଲର ନିକଷେ ଠାଣିଗଲ ଗୁରୁ
କବିତା-କାଞ୍ଚନ-ଗାର ।

ତଟିନୀ କେଦାରେ ଶଇଳ କାନନେ
ପଡ଼େ ଯେଉଁ ହ୍ରାସ ଝର
ଶନ୍ତା ବନେ ଯେତେ ଲେଖନୀରୁ ତବ
ସ୍ରବିଲ ପୀୟୂଷ ସର ।

କି ମୁଗ୍‌ଧ ନୟନ ନିବେଶି ଉତ୍କଳ-
ପ୍ରକୃତି-ଅଲେଖ୍ୟ ପରେ
ଜୀବନ ବିଳାସ ବିକାଶିଲ ତାର
ନିପୁଣ ଲେଖନୀ ଧାରେ ।

ଯେଉଁ ବନତୋଟା ହ୍ରଦ ନଦୀ ପଠା
ଜଡ଼ ସମ ଥିଲେ ଶୋଇ
ତୁମ ତୂଳୀମୁନେ ହସିଲେ ଯେସନେ
ନବ ପ୍ରାତେ ମୁଖ ଧୋଇ ।

ପଶି ଘଇଜର ପ୍ରାସାଦ କଳ୍ପନା
ଲେଖନୀ-କୁହୁକ ବଳେ
ନିଖିଳ ନୟନେ ଦେଖାଇଲ କବି
ସୁନୀଲ ଚିଲ୍‌କା-ଜଳେ ।
ଯା ବକ୍ଷ-ସୁଷମା ଫୁଟୁଥିଲା ସଦା
ବନ୍ଧ୍ୟା ବଣଫୁଲ ପରି
ବୀଜ ତୁମ କର ପ୍ରସବନ୍ତି ଫଳ
ଶାଶ୍ୱତ ବାସନା ଧରି !
ଯୁଗ ଯୁଗ ଲାଗି ଅହେ କାବ୍ୟଯୋଗୀ !
ଏକ ମୁକାନନକୁଞ୍ଜେ
ଅଙ୍କିଲ ଯେ ପୁଣ୍ୟ ପ୍ରଣୟର ଛବି
ପ୍ରଣୟୀହିଁ ତାହା ବୁଝେ ।
ନାୟିକାର ପଦେ ନାୟକ କେସନେ
ଦେଇଛନ୍ତି ନିଜରେ ବଳି
କାବ୍ୟ-ନଭପଟେ ଅଲେଖ୍ୟଟି ତାର
ଫୁଟେ କେ ଚନ୍ଦ୍ରମା ଭଳି ।
ତୁଚ୍ଛ ଅୟସରେ ସୁନା କରିବାର
ପରଶପଥର ଧରି
ତୁମ ପକ୍ଷେ ଏକା ସମ୍ଭବନ୍ତି କବି
ପ୍ରକୃତିବରପଜାଘ !

# ବ୍ୟାସକବି ଫକୀରମୋହନ

ଉପନ୍ୟାସ-ଜନ୍ମଦାତା ଧନ୍ୟ ସେନାପତି !
ପ୍ରତିଭାରେ କୋଟି ବାର ତୋଳେ ମୁଁ ପ୍ରଣତି ।
ଉତ୍କଳର ହସ୍ତେ ଦେଲ ଯେ ଅତୁଳ ଦାନ
ତବ ପଦେ କି ଭେଟିବ ଆଜ ତା ସନ୍ତାନ ?
ବିପ୍ଳବୀ ହେ ! ଢାଳିଗଲ ଅଗ୍ନିମୟ ବାଣୀ
ଉପନ୍ୟାସେ ବଜ୍ର ବର୍ଷା ଝଡ଼ରେ ଅହ୍ୱାନ ।
ମାତିଲ ସଂଗ୍ରାମେ ନିତ୍ୟ ଏ ସମାଜ ଲାଗି
କୋଟି ବାଧାବିଘ୍ନେ ତିଳେ ନ ପଡ଼ିଲ ଭାଙ୍ଗି ।
କରି ଦେଶ ଜାତି ସେବା, ସେବା ସମାଜର
ସୁଷୁପ୍ତ ଶ୍ରବଣେ ଢାଳି ଜାଗୃତି ମନ୍ତ୍ରର
ପ୍ରତିକୂଳ ଶକ୍ତି ଦଳି ଏ ଉତ୍କଳଭୂମେ
ଦୁଃଖର ଗୌରବ ମଦେ ଶୁଣାଇଲ ତୁମେ—
'ଅଭ୍ୟାସ ହୋଇଛି ଯାର ଗାଇବାର ଗୀତ
ଶତ ବାଧା ବିଘ୍ନ ତେଜି ଗାଇବ ନିଶ୍ଚିତ ।'
ଜାତିକର୍ଣ୍ଣେ ଢାଳି ଶତ ନବ ଉଦ୍‌ବୋଧନ
ବିଘ୍ନ ମଧ୍ୟେ କରିଗଲ ଅଦ୍ଭୁତ ସାଧନ ।
କୁସଂସ୍କାର-ଅନ୍ଧକାର ଘୁଞ୍ଚାଇବା ଲାଗି
ପଲ୍ଲୀ-ବକ୍ଷେ ସଦା ତୁମ୍ଭେ ଉଠିଛ ହେ ଜାଗି—
ଜାତିର ଅର୍ଦ୍ଧେକ ଯହିଁ ଭୋଗେ ଆଜୀବନ
ଝଡ଼ ବନ୍ୟା ଦୈନ୍ୟ ଦୁଃଖ ରୋଗ ଅର୍ଦ୍ଧାଶନ ।
ହୃଦୟ-ଦରଦ ଢାଳି ଗଲ ତୁମେ ଜାଳି
ସଂସ୍କାର-ଉଜ୍ଜ୍ୱଳ ଚେତନା-ଦୀପାଳି ।

ଜାତୀୟ ସଂଗ୍ରାମେ ସାଜ ସୁଦକ୍ଷ ସାରଥି
ନାୟକଙ୍କ ଗ୍ଟଳଛ ରଥ, ଧନ୍ୟ ସେନାପତ !
ବକ୍ଷତଜୀବନେ ତଳେ ଚୋହି ମ୍ରିୟମାଣ
ହସାଇଛ ରସସିକ୍ତ ଲେଖନୀର ପ୍ରାଣ ।

ହେ ଅମର କଳାଶିଳ୍ପୀ ! ହେ ବାସ୍ତବବାଦୀ !
ଶୂନ୍ୟ କରଗଲ ଦେଶେ ଯେଉଁ ସ୍ୱର୍ଣ୍ଣଗାଦୀ
ପୂର୍ଣ୍ଣ ତା କରବ କଏ ? ଅଙ୍କିବ କେ ହାୟ
ଦରିଦ୍ର କୁଟିରଠାରୁ ସ୍ୱଚ୍ଛହର୍ମ୍ୟ ଯାଏ ?
ଚର୍ଚ୍ଚିବଟି ଅଉ କାର ସୁଦକ୍ଷ ଅଙ୍ଗୁଳ
ଚଲାଇ ସୁଷମା-ଽଙ୍ଗ ଶବଳତ ତୂଳୀ ?
ଶାରଦା ସୁଯୋଗ୍ୟ ସୁତ ହେ ଯୁଗବନ୍ଦନ !
ଉତ୍କଳର ହସ୍ତେ ଦେଲ ଯେ ଅମୂଲ୍ୟ ଧନ
ଯାବତ ଥିବଟି ଶିଳ୍ପ ସାହିତ୍ୟ, ଏ ଜାତ
ପୂଜବ ସ୍ମୃତରେ ତବ ନତ୍ୟ ଶିର ପାତ ।

# ମେହେର କବି ଗଙ୍ଗାଧର

କବିକୁଳଚନ୍ଦ୍ର ଅହେ ଗଙ୍ଗାଧର !
ତୁମ ବିରଚିତ ସାହିତ୍ୟ-ସମ୍ଭାର
ଚିରଦିନ ରହି ବୀଣାପାଣି-ଅଳେ
ଅମର କରିଛି ତୁମକୁ ଉତ୍କଳେ ।

ତବ ସୁଲଳିତ କାବ୍ୟ 'ଇନ୍ଦୁମତୀ'
ଧନ୍ୟ ସେ ଲେଖାର ଗୂଢ଼ ପରିପାଟୀ
ଧନ୍ୟ କବି ତବ ଲେଖନୀର ତୂଳୀ
ଜନ୍ମ ସଙ୍ଗେ ସଙ୍ଗେ ଆସିଥିଲ ଧରି ।

ଲଭି ବିଭୁଙ୍କର ଅମୋଘ ଆଶିଷ
କାଳିଦାସଙ୍କର ହେଲ ପଟ୍ଟଶିଷ୍ୟ
ବାଣୀ-ତପୋବନେ ହେ ବୃଦ୍ଧ ତାପସ !
ଝଟରିଲ କାବ୍ୟ-ସାମବେଦ ରସ ।

ଅନ୍ଧ ଗହ୍ୱରରେ ସ୍ଫଟିକ ଦର୍ପଣ
ମରୁକୋଳେ ଅବା ସୁଶ୍ୟାମଳ ତୃଣ
ଝଡ଼ ଦେଶେ ଯଥା ସ୍ଥିର ଦୀପଛବି
ଏ ସମାଜେ ତଥା ଜନ୍ମ ତବ କବି !

ଦେଶ ବା ସମାଜେ ଲେଖନୀ ତୁମର
କର ନାହିଁ ଖାଲି ପ୍ରଭାବ ପ୍ରସାର
ଅମର ପ୍ରତିଭା ତବ ସବୁଠାଏଁ
ଖେଳି ଯାଉଅଛି ମଳୟ ପରାୟେ ।

ଦାରିଦ୍ର୍ୟ-କବଳୁଁ ସେ ଦିବ୍ୟ ପ୍ରତିଭା
ମୁକ୍ତ ଥିଲେ କବି, ମନେ ହୁଏ କିବା
ବଢ଼ି ସାବଲୀଳେ ସ୍ରୋତସ୍ୱିନୀ ପରି
ମାଡ଼ି ଯାଇଥାନ୍ତା ବହୁ ଦୂର ଧରି ।

ମାତର ତ ଏହା ଦୁନିଆର ଲୀଳା
ପ୍ରଗତି-ଅୟନେ ପଦେ ବାଜେ ଶିଳା
ସବୁ ବୁଝି ତେଣୁ ହେ ଉଦାରମନା !
ଦୈନ୍ୟ ପାଇଁ ଥିଲେ ନ କଲ ଶୋଚନା ।

ଅଭାବର ଶତ କ୍ରୂର ଉପହାସ
କରିନି ମଳିନ ତୁମର ବିକାଶ
ଜଗତେ ପ୍ରତିଭା ଚିର ପରିମଳ
ପ୍ରକାଶେ ନିଜରେ ଯଥା ଶତଦଳ ।

ପ୍ରତିଭାର ନବ ନୀରାଜନା ଲାଗି
ଉଠିନି ଏ ଜାତି ଏବେ ସୁଦ୍ଧା ଜାଗି
କାବ୍ୟନିଧି ତବ ତଥାପି ବରେଣ୍ୟ !
କସ୍ତୁରିକା ସମ କରେ ସମ୍ମୋହନ ।

ଓଡ଼ିଆ ସାହିତ୍ୟ ଥିବ ଯେତେ ଦିନ
ଥିବ ଯେତେ ଦିନ '<u>ତପସ୍ୱିନୀ</u>' ଚିହ୍ନ
'ଉତ୍କଳଲକ୍ଷ୍ମୀ'ର ଅନବଦ୍ୟ ଆଭା
ଦୀପିବ ଉତ୍କଳ-ସୂରୀବର-ସଭା ।

ଗଢ଼ିଗଲ ଯେଉଁ ସାହିତ୍ୟର <u>ଭିତ୍ତି</u>
କରିବ ସମ୍ବଳ ଗରିବ ଏ ଜାତି
ସ୍ତବକିତ ହେମ ମୁକୁତାର ସରି
କାବ୍ୟ-ଉପବନେ 'ପ୍ରଣୟବଲ୍ଲରୀ' ।

କବିତା-ପଲ୍ଲବେ ସେ 'ଅର୍ଘ୍ୟଥାଳୀ'
ବାଢ଼ିଗଲ କାବ୍ୟ-ଉପବନ-ମାଳୀ !
ବାଣୀପଦେ, ତାହା ଚିରମନୋହର
ଭାରତୀ-ଭକତ ହେ କବି-ମିହିର !

## ପଲ୍ଲୀପ୍ରାଣ ନନ୍ଦକିଶୋର

କାହିଁ ଗଲ ପଲ୍ଲୀପ୍ରାଣ ହେ ନନ୍ଦକିଶୋର !
ନିଖିଳ ଉତ୍କଳପ୍ରାଣେ ଅଣି ହାହାକାର ?
ହରାଇ ଦେଶମାତୃକା ତୁମ ପରି ପୁଅ
କିମ୍ବନ୍ତୁ ଝରାଏ ଅଶ୍ରୁଧାର ଅହରହ ।
ଜନମି ତ ମରୁଛନ୍ତି ପ୍ରାଣୀ ଅଗଣନ
ମାତ ସେ କୋଟି ଜନମେ କିବା ପ୍ରୟୋଜନ ?
ତୁମ ପରି କବି କିନ୍ତୁ ଗୋଟିଏ ହରାଇ
ଫେରି ପାଇବାକୁ ଯେଉଁରେ ଆଉ ଆଶା ନାହିଁ ।
ତୁମ ପାଇଁ ଉତ୍କଳର ଶତ ପଲ୍ଲୀଗ୍ରାମ
ଝୁରୁଛନ୍ତି ଦିବାନିଶି ସ୍ମରି ତବ ନାମ
ହିମ ଛଳେ ମୁଛେ ଅଶ୍ରୁ ଶ୍ୟାମ ଦୂର୍ବାଘାସ
କାନନ ମର୍ମରଛଳେ ତେଜି ଦୀର୍ଘଶ୍ୱାସ ।
ପଲ୍ଲୀ-ସୁଷମା-ରସିକ ତୁମ ପରି କେହି
ନିଖିଳ ଉତ୍କଳେ ଅନ୍ୟ ଜଣେ ଦେଖା ନାହିଁ ।
କି ମଧୁ କଳ୍ପନା ସଙ୍ଗେ କରି ଅହେ କବି !
ଚିତ୍ରିଲ ପଲ୍ଲୀର ସ୍ନିଗ୍ଧ ବିମୋହନ ଛବି ।
ଊଷାର ଅଧରରେଖା ନବବଧୂହାସ
ଫିଟାଏ ଛନ୍ଦରେ ତବ କଳ୍ପନା-ଉଚ୍ଛ୍ୱାସ
ପ୍ରାବୃଟର ଶିଶୁ ଯେବେ ଧରଣୀରେ ଖେଳେ
'ବରଷା କବିତା' ତବ ଜାଗେ ପ୍ରାଣତଳେ ।

ଗଗନେ ଗରଜେ ମେଘ, ତଳେ ଝଞ୍ଜା ଡାକେ
ହୃଦୟ-ଫଳକେ ଶତ ଦୁଃଖ-ଛବି ଆଙ୍କେ—
ବିରହିଣୀ ନାୟିକାଙ୍କ ଛବି ଅନ୍ତର-ନନ୍ଦନ
ନିଠୁର ନିୟତିବଶେ ହୋଇଛନ୍ତି ଦହନ ।
ଝରିଲା ବସନ୍ତ ପ୍ରାତେ ଯେବେ ବାଳରବି
କେଉଁ ପଦ୍ମ ତୁଲୀପୁଟେ ଅଙ୍କିଲ ସେ ଛବି !
ଶିଶୁମୁଖେ ଫୁଟେ ଅଙ୍କେ ଯେ ଅବ୍ୟକ୍ତ ଗୀତ
ଶ୍ରବଣେ ତା ଜାଗିଉଠେ ତବ ମଧୁସ୍ମୃତ ।
ପକ୍ଷୀଗୃହେ ଶୁଣି ସ୍ୱର ତାମସୀକାନ୍ତର
ବାଢ଼ିଦେଲା ଯେବେ ବଧୂ ତଣ୍ଡୁଳ ଅଧାର
କି କଥା କହିଲା ତାଙ୍କ ଚଞ୍ଚୁ ଦେଇ ତୁମେ
ସେ ବାଣୀ ଫୁଟିଲା ତୁମ ଲେଖନୀର ମୁନେ ।
କବିତାନିବନ୍ଧ ତବ ପଢ଼ିଲେ ହେ କବି !
ମୂର୍ତ୍ତିମନ୍ତ ହୋଇ ଉଠେ ନେତ୍ରେ ପକ୍ଷୀଛବି ।
ଅନୂଢ଼ା କୁମାରୀ ମେଳ ଖୁଦୁକୁଣୀ ପୀଠେ
ନବୋଢ଼ା ବଧୂଙ୍କ ଭେଟ ପୁଷ୍କରିଣୀ ତଟେ ।
ସଞ୍ଚର ଖଞ୍ଜଣୀ ମାଡ଼ ଭାଗବତ ଘରେ
ଶୃଗାଳ କୁହାଟ ପୁଣି ମଶାଣି ପ୍ରାନ୍ତରେ ।
ନିଶିର ପିଶାଚ ସମ ଦଣ୍ଡ ଅସି ତାକ
ଉପୁଜାଏ ସୁପ୍ତ ଶିଶୁପ୍ରାଣେ ଯା ଆତଙ୍କ ।
ନିଦାଘର ଝାଞ୍ଜି ସ୍ୱନେ, ବରଷାର ତାନେ
ଯେ ବ୍ୟଥାର ବାଣୀ ଭରେ ପ୍ରକୃତିର କାନେ
ସେ ନୀରବ ରହସ୍ୟର ମର୍ମ ଉନ୍ମୋଚନେ
କରିବାକୁ ଏକା ତୁମେ ହୋଇଛ ଭାଜନ ।

ଜଗତ କବଳେ ପଡ଼ି ସକଳ ଶକତି
ହରାଇ ଆବର ବେନି ନେତ୍ର ଦିବ୍ୟଜ୍ୟୋତି
ରୋଗଶଯ୍ୟା ପରେ ଶୋଇ ପଶ୍ଚିମ ଜୀବନେ
ରୋପିଗଲ ତୁମେ କବି ସାହିତ୍ୟ-କାନନେ—
ରୂପରସଗନ୍ଧମୟ ଯେ 'କନକଲତା'
ହୃଦୟ-ମନ୍ଦିରୁ ଯେତେକ ସକଳ ମମତା
ନିଃଶେଷି ଦେଇଛ ତହିଁ ଢାଳି ପକ୍ଷୀପ୍ରାଣ
ସମାଜେ ଆସନ ଯାର ଆଦର୍ଶ ମହାନ ।
ଉପକଥା ଛଳେ ତୁମେ ନାରୀର ଅକୃତି
କୋମଳ ଆବେଗମୟ ସୂକ୍ଷ୍ମ ଅନୁଭୂତି
ନିପୁଣ ତୂଳିକା ମୁନେ ପ୍ରକାଶି ହେ କବି !
ରଖିଗଲ ଏକ ମଧୁ ଅନୁପମ ଛବି ।
ସମାଜର ନାରୀହୃଦସ୍ପନ୍ଦନ ଯେସନେ
ଅନୁଭୂତ ହୋଇ ତୁମ ସୁକୋମଳ ପ୍ରାଣେ
ତା ପାଇଁ ପ୍ରଚ୍ଛନ୍ନ ଯେତେ ସେନେହ ଉଚ୍ଛ୍ୱାସ
'କନକଲତା'ରେ ତବ ଲଭିଛି ପ୍ରକାଶ ।
ଯାବତ ଏ ଦେଶେ ଥିବ ଶତ ଶତ ପକ୍ଷୀ
ହସୁଥିବ ଯେତେ ଦିନ ଶ୍ୟାମ ତରୁବଲ୍ଲୀ
ଗାଉଥିବ ଚୂତକୁଞ୍ଜେ 'ବସନ୍ତକୋକିଳ'
ବହୁଥିବ ଯେତେ ଦିନ 'ନିର୍ଝରଣୀ' ଜଳ
ସେତେ ଦିନ ଯାଏ କବି, ଏ ଓଡ଼ିଆ ଜାତି
ବିଶୋରି ପାରିବ ନାହିଁ ତବ ମଧୁ ସ୍ମୃତି;
କବିତା ତୁମର ଗାଇ ବାଣୀର ତାନେ
ଅଙ୍କିବ ସ୍ୱଦେଶ-ଛବି ତରୁଣ-ପରାଣେ ।

# ଭକ୍ତକବି ମଧୁସୂଦନ

ଉତ୍କଳମାତାର ଅଙ୍କେ ଯୋଗ୍ୟତମ ସୁତ
ଶ୍ରୀ ମଧୁସୂଦନ ସାଧୁଗୁଣଗଣଯୁତ !
ଲଭିଥିଲ ଜନ୍ମ ସନା ନରଦେହ ଧରି
ଶତ୍ରେ ତବ ଦେବଧର୍ମ ଥିଲେ ବହୁ ଭରି ।
ମହର୍ଷିପ୍ରବର ତୁମେ, ମହର୍ଷିର ଗୁଣ
ସକଳେ ହୃଦୟେ ତବ ଲଭିଥିଲା ସ୍ଥାନ ।
ବହୁ ତପସ୍ୟାର ଫଳେ ଜନନୀ ଉତ୍କଳ
ତବ ସମ ଯୋଗ୍ୟ ସୁତ କରିଥିଲା କୋଳ ।
ଜୀବନର ଥିଲା ତବ ସତ୍ୟ ମହାବ୍ରତ
ନେଇଥିଲ ବାଛି ତେଣୁ ପୁଣ୍ୟ ଧର୍ମପଥ ।
ହିଂସା କପଟତା ତୁମଠାରୁ ବହୁ ଦୂରେ
ପବିତ୍ରତ ସମ ଛନ୍ଦ ଥିଲେ ଯୁକ୍ତକରେ ।
ଦେଶସେବା ଜୀବନର ଥିଲା ମୁଖ୍ୟ କର୍ମ
ଆତିଥ୍ୟରେ ପୂରିଥିଲା ତବ ଦେବପ୍ରାଣ ।
ମହାପୁରୁଷଙ୍କ ତୁମେ ଥିଲ ଅବତାର
ଦେବତ୍ୱର ଉପାଦାନେ ବଳିଷ୍ଠ ଶରୀର
ହୋଇଥିଲା ଗଢା ତବ—ତେଣୁ ଉଚ୍ଚପ୍ରାଣ !
ସାଧିଲ ଉତ୍କଳେ ଜନ୍ମେ ପ୍ରଭୂତ କଲ୍ୟାଣ ।

ବିରଚି ସାହିତ୍ୟ ତୁମେ ରଚି ଗ୍ରନ୍ଥ ଗୀତେ
କରିଲ ପ୍ରଚୁର ଜନସମାଜର ହିତେ ।
"ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନସ୍ୱାମୀ"
ଶିଶୁର ହୃଦୟେ ଦେଲା ଭକ୍ତି-ବୀଜ ବୁଣି ।
ଉତ୍କଳେ ଅମୃତ ସମ ତବ ପୁଣ୍ୟ ଗୀତି
ବାଳ ବୃଦ୍ଧ ବନିତାର ପ୍ରାଣେ ଦିଏ ପ୍ରୀତି ।
ଶାରଦାଭବନ ଥିବ ଯାବତ ଉତ୍କଳେ
ପାଉଥିବ ପୂଜା ତୁମେ କୋବିଦମଣ୍ଡଳେ ।
ଯାବତ ଥିବ ଏ ଭବେ ଭକତିର ବିଭା
ରହିଥିବ ଦୀପ୍ତ ତବ ଅମର ପ୍ରତିଭା ।

# ଦେଶପ୍ରାଣ ଗୋପବନ୍ଧୁ

ଅହେ ପ୍ରାତଃସ୍ମରଣୀୟ ଦୀନଜନବନ୍ଧୁ
ନିଖିଳ ଉତ୍କଳ ନେତ୍ରୁ ଲୋତକ ବୁହାଇ
ଦେଶହିତେ ଢାଳି ତବ ପ୍ରତି ରକ୍ତବିନ୍ଦୁ
ରହିଲ ହେ କେଉଁ ଦେଶେ ଚିରଦିନ ପାଇଁ ?

ହେ ଦେଶବତ୍ସଳ, ଆଜି ତୁମର ଅଭାବେ
ଦରିଦ୍ର ଉତ୍କଳପ୍ରାଣ କରେ ହାହାକାର
ଚିରଦିନ କାନ୍ଦୁ ଥିବେ ଏ ଦେଶେ ସରବେ
ସ୍ମରି ତବ ଗୁଣାବଳୀ ଅହେ ତ୍ୟାଗବୀର !

ଉତ୍କଳକୁ ଆପଣାର ପରିବାର ମଣି
ଦେଶହିତେ କିଏ ଦେବ ସର୍ବସ୍ୱ ହେ ଢାଳି ?
ଅସମ୍ଭବ ଅଟେ ତାହା ହେ ବୀରଅଗ୍ରଣୀ
ଉପମା ତୁମେହିଁ ଦେଶେ ତୁମର ହେ ଖାଲି !

କେତେ ଦିନ ପରେ ଆଉ ବିଧୁର ନିର୍ଦ୍ଦେଶେ
ଶୂନ୍ୟ ସ୍ଥାନ ତବ କିଏ କରିବ ପୂରଣ
ଅବତୀର୍ଣ୍ଣ ହୋଇ ଦେଶେ ଗୋପବନ୍ଧୁ ବେଶେ
ଜାଣନ୍ତି ତା ସର୍ବଦର୍ଶୀ ଏକା ଭଗବାନ ।

ଦେଶହିତେ କିଏ ଆଉ ଭୋଗି କାରାବାସ
ଆଣିବ ଉତ୍କଳପ୍ରାଣେ ନବୀନ ଉତ୍ସାହ
ବୁଭୁକ୍ଷୁ ବଦନେ ଅଉ କେ ଫୁଟାଇ ହାସ
ଢାଳିବ ଦରିଦ୍ର ଲଗି ଧାର ଧାର ଲୁହ ?

ଅଦ୍ଭୁତ କର୍ମଶୀଳ ହେ ବୀରକେଶରୀ
ଛିନ୍ନମସ୍ତା ଉତ୍କଳର ପୂର୍ଣ୍ଣାଙ୍ଗ ସପନ
ଦେଖିବାକୁ ଏ ଜାତିରେ ଆଉ ତୁମ ପରି
ହେ ଦେବତା ! କେହି ଆଉ ନୋହିଲା ଭାଜନ ।

ଦରିଦ୍ର ଉତ୍କଳେ ଲାଗିଅଛି ଚିରଦିନ
ସେହି ବନ୍ୟାର ତାଣ୍ଡବ, ଝଡ଼ର ବିଦ୍ରୂପ
ସେହି ଲକ୍ଷ କଙ୍କାଳର ତୀବ୍ର ଅନଶନ
ମରଣର ଅଭିନୟେ ପ୍ରେତାତ୍ମାର ସ୍ତୂପ ।

ମନ୍ତ୍ର ଧରି ସହିଷ୍ଣୁତା ହିମାଚଳ ସମ
ବୁହେ ଛାଡ଼ି କିଏ ନିଜ ବୁକ୍ ଚିରା ଧନ
ଯାଉଛନ୍ତି ଅକାଳ-ରଣେ ପିନ୍ଧି ତ୍ୟାଗ-ବର୍ମ
କୋଟି ପ୍ରାଣ ପାଇଁ ସାଜି ନିର୍ଭୀକ ସଇନ ?

ଅହେ ଦେବ ! ତପୋନିଷ୍ଠ ଭଗୀରଥ ପରି
ଜାତୀୟତା-ସୁରଧୁନୀ ଆଣିଲ ଯା ବାହି
ପରାଧୀନ ଜାତି ପିଇ ତା ଜୀବନ ବାରି
ମୁକ୍ତିପଥେ ସଂଚଳିତେ ଉଠିଲେକ ଗର୍ଜି ।

ଗୃହଂବ କ ଦାରେ ଏବେ ନଦସ୍ୱଗ-ଗୃହୁ
ଅନଶନ-ପ୍ରପୀଡ଼ିତ ଓଡ଼ିଆର ମୁଖେ
ଥାଇ ନନ୍ଦ୍ୱ ଅନିଲବର୍ଣ୍ୟ ! ସେ ସରଗପୁରୁ
କେତେ ଯେ ଦୁଃଖର ଝଡ଼ ବାଜେ ତାର ବୁକେ ।

ଅଭିଶପ୍ତ ଏ ଉତ୍କଳ ଚିର ଭାଗ୍ୟହୀନ
ତୁମ ପରି ଯୋଗ୍ୟ ପୁତ୍ର ହରାଇ ଅକାଳେ
ଦୀର୍ଘ ଅଶ୍ରୁ ବହୁଥିଲେ ତବ ଅନୁଷ୍ଠାନ
ପୂର୍ଣ୍ଣାଙ୍ଗ ପ୍ରାପତ ହୋଇଥା ଅନ୍ତେ ସକଳେ ।

ହେ ତାପସ ! ବହୁମୁଖୀ ପ୍ରତିଭା ତୁମର
ଶତମୁଖୀ ନଦୀ ସମ ଉପଶାଖା ଧରି
ବହୁଦଗେ ଗତି ରଚି ଦାନ ଉତ୍କଳର
ପାଇଥିଲା ଖୋଜି ତାର ଭାବ-ଭାଗ୍ୟ-ଡୋର ।

କବି କର୍ମୀ ତ୍ୟାଗୀ ରୂପେ ଜାଳି ପୁଣ୍ୟ ବତୀ
ଜାତିର ପରାଣେ ଯେହୁ ଅଣିଲେ ସ୍ପନ୍ଦନ,
ଲଭିପିବ କାର ହୃଦୁଁ ତାଙ୍କ ମଧୁସ୍ମୃତି
ମରତ-ସାହାରାତଳେ ଥିଲେ ଯେ ନନ୍ଦନ !

'ସମ୍ବାଦପତ୍ର' ର ତୁମେ ପ୍ରଥମ ଜନକ
ପ୍ରକାଶି ଅନବଦ୍ୟ ମୌଳିକ ପ୍ରବନ୍ଧ
ଜାତୀୟ ଭାଷାରେ ବୀର ! କରି ପ୍ରାଣ ଦାନ
ଦେଇ ଯାଇଅଛ ତାରେ ସର୍ବୋଚ୍ଚ ଆସ୍ପଦ ।

ଉତ୍କଳର ନଦୀ ଗିରି ପ୍ରାନ୍ତର କାନନେ
ଟଶ୍ରୀ ସେନେହ ତବ କେମନେ ନିହିତ
କେମନେ ରଚନା ତବ ସୁତ ତାର ଉଦ୍ଦେଶେ
“କାନ୍ତ କବିତା”ରେ ତାହା ହୁଏ ଅନୁଭୂତ ।

ଓଡ଼ିଆ ଜାତିର ଗତ ଗୌରବ କାହାଣୀ
ସ୍ୱକୀୟ ମଧୁର ଭାଷେ ସେ ବୀର କୋବିଦ
ପ୍ରକାଶି ଅଗ୍ରେଣ୍ୟ ଆଉ ଉଚ୍ଛ୍ୱସିତ ବାଣୀ
କରିଅଛ ଏ ଜାତିରେ ସତତ ଉଦ୍‌ବୁଦ୍ଧ ।

“ଦେଶର ସ୍ୱରାଜ୍ୟପଥେ ଅଛି ଯେତେ ଗାଡ଼
ପୂରିଯାଉ ପଡ଼ି ତହିଁ ମୋର ମାଂସ ହାଡ଼”
ଏଭଳି ଅହ୍ୱାନ ବାଣୀ କେହୁ ତୁମ ସର
ଶୁଣାଇ ତ ନାହିଁ ଦେଶେ ନରଦେହ ଧରି !

ତୁମେ ଯଦ ଖାଲି ବାଣୀ-ଉପାସକ ରୂପେ
ନିପୁଣ ନର୍ତ୍ତକୀ ମୁଖେ ଯାପିଥାନ୍ତ ଧନ
ପ୍ରତେ ହୁଏ, ଲଭିଥାନ୍ତା ସାହିତ୍ୟର ସ୍ତୂପେ
ତୁମରି କବିତାବଳି ସର୍ବୋଚ୍ଚ ଅସନ ।

ପାଲଟିଛି ଏ ଧରଣୀ ଯା ପରଶ ଲଭି
ସ୍ୱାର୍ଥହିଂସା ଦ୍ୱେଷହୀନ ସୁନ୍ଦର ସରଗ
ସେ କି ମରିପାରେ ଅଛି ଯାବତ ଏ ରବି
ବିନ୍ଦୁ ବିନ୍ଦୁ ରକତରେ ଦେଲ ଯେ ଅରଘ ?

ତୁମେ ଯଦି ଗୋପବନ୍ଧୁ ପାଇଥାଅ ମରି
ତୁମ ସଙ୍ଗେ ମରିଅଛି ଜାତିର ଦର୍ପଣ
କେବେ ପୁଣି ସେ ସ୍ୱଇକୁଁ ଅଁସିଲେ ହେ ଫେରି
ପୂଜିବେ ଉତ୍କଳୀ ତବ ପଙ୍କଜ-ଚରଣ ।

ଯଦି ଅବା ତୁମ୍ଭେ ଆଜି ତେଜି ମରଦେହ
ଯାଇଅଛ ଏ ଦେଶର ମାଟିତଳେ ଲୁଚି
ବାନ୍ଧ ବନ୍ଧୁ ତୁମର ସେ ରକତର ଦ୍ୟୁ
ରଖିଛନ୍ତି ଅମର କରି ତୁମକୁ ଦଧୀଚି !

## ମନସ୍ୱୀ ମଧୁସୂଦନ

ଅଜ୍ଞାନ-ତମିର-ଦେଶ ଜ୍ଞାନାଲୋକେ
ଆଲୋକିତ କରି
ଜନ୍ମିଲ ଉତ୍କଳ-କ୍ରୋଡେ ଦେଶପ୍ରାଣ
ହେ ବୀରକେଶରୀ !
ପଙ୍କିଲ ଉତ୍କଳ-ସରେ ଫୁଟି ତୁମ୍ଭେ
ସ୍ୱଚ୍ଛ ଅରବିନ୍ଦ
ବିତରିଲ ପ୍ରତି ହାତେ ହେ ମନୀଷି !
ଜ୍ଞାନ-ମକରନ୍ଦ ।
ପରଶ ପଥର ସ୍ପର୍ଶେ ଲୌହ ଯଥା
ପାଲଟେ କାଞ୍ଚନ
ତୁମ୍ଭ ପରି ଯୋଗ୍ୟ ସୁତ ପାଇ ମାତା
ଉତ୍କଳ ତେସନ ।
ସ୍ୱଦେଶପ୍ରେମିକ ବାଗ୍ମୀ ସତ୍ୟପ୍ରିୟ
ସର୍ବଗୁଣାଧାର
ନୀତିଶାସ୍ତ୍ରବିଶାରଦ ହେ କର୍ମିକ
ତ୍ୟାଗୀ ବୀରବର !
ଲେଖନୀ ଅକ୍ଷମ ମମ ବର୍ଣ୍ଣିବାକୁ
ଅଗାଧ ପାଣ୍ଡିତ୍ୟ
ଢାଳିଗଲ ସଭାମଞ୍ଚେ ଯେ ମଧୁର
ବକ୍ତୃତା ସାହିତ୍ୟ ।

ପୁନରପି ଜନ୍ମି ଅଛ ଉତ୍କଳରେ
ତୁମ ପର କିଏ
ଜଗିବ ସ୍ୱଦେଶ ଶତ୍ରୁ ଜୀବନର
ଶେଷ ଶ୍ୱାସ ଯାଏ ?
ସ୍ୱାର୍ଥକୁ ସିନ୍ଧୁରେ ଥୋଇ ଦେଶପାଇଁ
ଢାଳି ମନପ୍ରାଣ
ପୁରପଲ୍ଲୀପ୍ରାଣେ ତୁମେ ଆଣିଅଛ
ନବ ଜାଗରଣ ।
ହେ ଚତୁର ବୁଦ୍ଧିଜୀବ ! ସ୍ୱାର୍ଥସଙ୍ଗେ
ହୋଇ ଧୃତବ୍ରତ
ଜାତି-ପ୍ରେମ-ବହ୍ନି ତୁମେ ପ୍ରତି ପ୍ରାଣେ
କଲ ପ୍ରଜ୍ୱଳିତ ।
ସ୍ୱଦେଶର ହିତ ପାଇଁ ନିଜ ସ୍ୱାର୍ଥେ
ଦେଇ ଜଳାଞ୍ଜଳି
ଯୋଡ଼ି ଦେଇଅଛ ତୁମେ ଜନନୀର
ବିଚ୍ଛିନ୍ନ ମଉଳି ।
ଶିଳ୍ପ କଳା କଉଶଳ ଦେଶେ ଦେଶେ
କରି ହେ ପ୍ରଚାର
ଜଡ଼ ଏ ଓଡ଼ିଆ ପିଣ୍ଡେ କରିଅଛ
ପ୍ରେରଣା ସଞ୍ଚାର ।
ହେ ଜନନୀ-ଅବତଂସ, ଜନ୍ମଭୂମି—
ଉଦ୍ୟ ଧୁରନ୍ଧର !
ଶୁଣାଇଛ ପ୍ରତି କାନେ ସ୍ୱାଧୀନତା
ମୁକତି ମନ୍ତ୍ର ।

ବୀରଗୀତି ଗାଇ ପୁଣି କମ୍ବୁକଣ୍ଠେ
ମେଘମନ୍ଦ୍ର ସ୍ୱରେ
ତଡ଼ିତପ୍ରବାହ ତୁମେ ଖେଳାଉଛ
ପ୍ରତି ଧମନୀରେ ।
ସୁସ୍ଥ ଓଡ଼ିଆ ଜାତି ଗଢ଼ିବାର
କଳ୍ପନା ସପନ
କେ ଅବା ଦେଖଇ ଅଛି ଯେସନ ତୁମ
ପ୍ରତିଭା ମହାନ ?
ତୁମ ତିରୋଭାବେ ବୀର ଏ ଦେଶ ଯେ
ତମିସ୍ରେ ମଗନ
ପଥଭ୍ରଷ୍ଟ ଜନତାର ଛନ୍ତି ଯେତେ
ଅରକ୍ଷ ସନ୍ତାନ ।
ଅରଜି ପ୍ରଚୁର ବିତ୍ତ ଦେଶହିତେ
କରି ସବୁ ବ୍ୟୟ
ପଥର ଭିଖାରି ସମ ରିକ୍ତହସ୍ତେ
ନେଇଛ ବିଦାୟ ।
ତେଣୁ ଆଜି ନିସନ୍ଧ୍ୟାରେ ପଲ୍ଲୀପୁରେ
ଉଠେ ସେହି ଗାନ
"ତ୍ୟାଗବୀର ବୀରବାହୁ ଯୋଗ୍ୟସୁତ
ଶ୍ରୀ ମଧୁସୂଦନ ।"
ଆଧୁନିକ ଉତ୍କଳର ଯାହା କିଛି
ସର୍ବଶ୍ରେଷ୍ଠ କୃତ୍ୟ
ତା ତଳେ ଅଦେଖାଭାବେ ରହିଅଛି
ଲଗି ତୁମ ହାତ ।

ଏ ଦେଶ ଯଦିବା ଆଜି ଲଭିଅଛି
ସ୍ୱକୀୟ ପ୍ରତିଷ୍ଠା
ତା ମୂଳେ ରହିଛି ବୀର ! ସୁକଠୋର
ତବ କର୍ମନିଷ୍ଠା ।
ଉତ୍କଳ ପାଇଛି ଫେରି ଯଦି ତାର
ହୃତ-ଗଉରବ
ଜାତିର ସମ୍ମାନ ଆଉ ପ୍ରକୃତିଲବ୍ଧ
ଅମୂଲ୍ୟ ବିଭବ—
ହସଇ ନାହାନ୍ତି ଆଶା ଯଦି ଆଜି
ଦୀନ ପ୍ରଜାକୁଳ
ତା ମୂଳେ ନିହିତ ଅଛି ବୀର ! ତୁମ
ଏକାଗ୍ରତା ଫଳ ।

ଯଦ୍ୟପି ହିନ୍ଦୁ ଧର୍ମର ସମାଧାନ
ଆଚରଣ ଲାଗି
ଥିଲ ତୁମେ ବନ୍ଧୁ ଦୂରେ ନିର୍ମମ ଏ
ସମାଜ ତିଆଗି—
ତଥାପି ଯେ ପ୍ରତିନିଧି ଥିଲ ଜଣେ
ହିନ୍ଦୁ ସମାଜର
ହୋଇଛି ତା ପ୍ରମାଣିତ ତୁମଠାରେ
ଶତାଧିକ ବାର ।
ଅଭାଗୀ ଉତ୍କଳମାତା ଶିରହୀନ
କ୍ଷୀଣ ମେରୁଦଣ୍ଡ
ଭାଙ୍ଗି ଯେ ପଡ଼ିଛି ତବ ତିରୋଧାନେ
ହୋଇ ଶତଖଣ୍ଡ ।

ଜାତୀୟ ଜୀବନେ ଯେତେ ଥିଲା ପାପ
ଅନ୍ଧ କୁସଂସ୍କାର
ବନ୍ୟାସ୍ରୋତ ସମ ଭାସି ଯାଇଛି ତା
ଲଗି ତୁମ ବର ।
ନବୋତ୍କଳ-ଜନ୍ମଦାତା କୁଳବୃଦ୍ଧ
ହେ ମଧୁସୂଦନ !
ଋଣୀ ତବ ପଦତଳେ ଏ ଉତ୍କଳ-
ଜାତି ଚିରଦିନ ।

## ବାଗ୍ମୀ ବିଶ୍ୱନାଥ

ଶୁଭକ୍ଷଣେ ଜନ୍ମି ଅହେ ବୀର ବିଶ୍ୱନାଥ, !
ଚଳାଇଲ ନିପୁଣ କରେ ସାରସ୍ୱତ ରଥ ।
ଉତ୍କଳମାତାର ତୁମେ ସୁଯୋଗ୍ୟ ସନ୍ତାନ
ବକ୍ତୃତା-ମଣ୍ଡପେ ଥିଲ କେଶରୀ ସମାନ ।
ସାହିତ୍ୟ-ପୁରୋଧା ବାଗ୍ମୀ ହେ ପ୍ରେରଣାଦାତା
ତୁମ ସମ ପୁତ୍ର ଧରି ଧନ୍ୟ ଦେଶମାତା ।
ସଞ୍ଜୀବନୀ ମନ୍ତ୍ର ପଢ଼ି ସାହିତ୍ୟ-ମଶାଣେ
ଯାଇଅଛ ସ୍ମୃତି ତବ ରଖି କୋଟିପ୍ରାଣେ ।

ହେ ନିର୍ଭୀକ ସଂସ୍କାରକ ! ବାଜି ତୁମ କର
ଭାଜିଅଛି ଲକ୍ଷ ଶତ ଅନ୍ଧ କୁସଂସ୍କାର ।
ସନ୍ଦର୍ଭରଚକ ବାଗ୍ମୀ ନିର୍ଭୀକ ସରଳ !
ସଞ୍ଚାରିଛ ଓଡ଼ିଆର ପ୍ରାଣେ ନବ ବଳ
ଅବିର ଉତ୍ସାହ ଶକ୍ତି, ଶୋଣିତେ ସ୍ପନ୍ଦନ
ଦେଶମାତୃକାର ତୁମେ ବରେଣ୍ୟ ନନ୍ଦନ ।

ଉପାଧି ବରଜି ଅହେ ଦେଶଭକ୍ତ ବୀର !
ରଖିଲ ଦୃଷ୍ଟାନ୍ତ ତୁମ ମହତ ପ୍ରାଣର ।
ତେଣୁ ତବ ସ୍ମୃତି ଅହେ ଅମୃତସନ୍ତାନ !
ରହିଲା ସାରଦା ପୀଠେ ଚିର ଅମଳିନ ।

ଅସୀମ ସାହସ ଭରି ନାହଁଣଙ୍କ ହୃଦୟେ
ତୁମ ପରି ସତ୍ୟନିଷ୍ଠ ମୁଖରିତ୍ତୁ କଏ ?
ଖୋଲାଇ ଚମକ କେବା ବିଦ୍ୟୁତ୍‌ପ୍ରଭା ଜିଣି
ତୁମ ସମ ତାଳ ପ୍ରାଣେ ଅଗ୍ନିମୟୀ ବାଣୀ
ଗରଜି ସଭାରେ ମନ୍ଦ୍ର ସ୍ତନିତ ସମାନ
ଉଦ୍‌ବୁଦ୍ଧ କରିବ ଷଣେ ସଭାସଦମାନ ?

ଓଡ଼ିଆ ଜାତିର ଯେତେ ଅନ୍ଧ କୁସଂସ୍କାର
ବଳିଷ୍ଠ ସାହିତ୍ୟ ଭାଷେ କରି ତା ପ୍ରଚାର
ନବଯୁଗସ୍ରଷ୍ଟା ରୂପେ ସ୍ଥାପି ମୁଦ୍ରାଯନ୍ତ୍ର
ଦେଖାଇଛ ତୁମ ମହା ଆଦର୍ଶ ସତନ୍ତ୍ର ।

ସାହିତ୍ୟ-ପୁରୋଧା ଗ୍ରାମବାସୀ ବିଶ୍ୱନାଥ !
ତୁମେହିଁ ଉତ୍କଳେ ନାରୀଶିକ୍ଷା-ଅଗ୍ରଦୂତ
ଯେଣୁ ଅନ୍ତଃପୁରବନ୍ଦୀ-ଦୁର୍ଦ୍ଦଶା ବିଲୋକି
ଜାଗରଣ ଇତିହାସ ଗଲ ତୁମେ ଲେଖି
"ବିବିଧ ପ୍ରବନ୍ଧେ"ଯାହା ଜାତିର ପରାଣେ
ଏବେ ସୁଦ୍ଧା ନବ ଶକ୍ତି ଉଦ୍ଦୀପନା ଅଣେ ।
ତୁମ ତିରୋଭାବେ ଦେଶ ହୋଇ ହୀନବଳ
ସ୍ମୃତିହିଁ ତୁମର ଯାହା ରଖିଛି ସମ୍ବଳ ।
ମାତ୍ର ତୁମ ବହୁମୁଖୀ ମହତୀ ପ୍ରତିଭା
ଦେଶ ଆଗେ ଚିରଦିନ ହୋଇଥିବ ଜଭା ।

## କବି କୁନ୍ତଳା

ଉତ୍କଳ-ଉତ୍ସଙ୍ଗେ ଜନ୍ମି ଶୁଭକ୍ଷଣେ କୁନ୍ତଳାକୁମାରୀ !
ଦେଖାଇଲ ନାରୀଶକ୍ତି ଜୀବନରେ ଶୁଭକର୍ମ କରି ।
ରମଣୀକୁଳ-ଆଦର୍ଶ କବୟିତ୍ରୀ ହେ ପ୍ରଗତିଶୀଳା !
ଦେବୀ ବୀଣାପାଣିଙ୍କର ଯୋଗ୍ୟସୁତା ସ୍ୱର୍ଗତା କୁନ୍ତଳା !
ସାହିତ୍ୟ-ଗଗନତଳେ ତୁମେ ଏକ ଦୀପ୍ତ ଧ୍ରୁବତାରା
ରମଣୀ-ସୁମନକୁଳେ ତୁମେ ସ୍ୱର୍ଗ ପାରିଜାତ-ହାର ।
ତୁମ ଉଚ୍ଚ ଆଦରଶ ନାରୀପ୍ରାଣେ ଆଣିଛି ସ୍ପନ୍ଦନ
ବାଢ଼ିଛି ଭାରତୀ-ପଦେ ଯେଣୁ ଶତ କବିତା-ସୁମନ ।
ବିଧାତାର କ୍ରୁର ଶାପେ ହତଭାଗୀ ଏ ଉତ୍କଳମାତା
ଅକାଳେ ଯା ହରାଇଲା ତୁମ ଭଳି ଗୁଣବତୀ ସୁତା ।
ଦ୍ୱିତୀୟା କୁନ୍ତଳା କେବେ ଅବତୀର୍ଣ୍ଣା ହୋଇ ଏ ମରତେ
କରିବ ପୂରଣ ତବ ଶୂନ୍ୟସ୍ଥାନ ନାହିଁଟି ପରତେ ।
ଚିରଦିନ ପାଇଁ ଗଲ ମରଣର ଯବନିକା ପାରେ
ଆଉ କି ଏ ଦେଶଜନେ ଦେଖିବେ ସେ ସ୍ନିଗ୍ଧ ମୁଖ ବାରେ ?
ଉତ୍କଳେ ତୁମର ପରି କେହି ମାତା କରିବ ପ୍ରସବ
ଦ୍ୱିତୀୟା କୁନ୍ତଳାଟିଏ, କେବେ ଏହା ହେବ କି ସମ୍ଭବ ?
ବିଧିର ଆଶିଷେ ତୁମେ ଆସିଥିଲେ ଦୀର୍ଘ ଆୟୁ ଲଭି
କାବ୍ୟଜଗତକୁ ନିଶ୍ଚେ ପୂର୍ଣ୍ଣ କରି ପାରିଥାନ୍ତ ଦେବୀ !
ଭାଗ୍ୟଦୋଷୁଁ ସେ ଆକାଂକ୍ଷା ମନେ ତବ ରହିଲା ଅପୂର୍ଣ୍ଣ
ଦରସ୍ଫୁଟ କଢ଼ି ଅହା କୀଟଦଷ୍ଟ ହୋଇଲେ ଯେସନ ।
ପୁରେ ପୁରେ ଜନ୍ମିବାକୁ ତୁମ ପରି ବିଦୁଷୀ ଲଳନା
ସନ୍ତୋଷେ ଉତ୍କଳର ବଧୂ ବିଭୁପଦେ କରୁ ନିତ୍ୟ ଜଣା ।

ତେବେ ବା ସେ କୃପା କରି ଶୁଣି ନାରୀ କରୁଣ ଆକୁତି
ଦେଲେ ଏ ଉତ୍କଳହାତେ ତୁମ ପରି ନାରୀ ବିଦ୍ୟାବତୀ ।
ପୁନରପି ଏ ମାଟିରେ ଜନ୍ମ ନେଲ ହେ ଦେବୀ କୁନ୍ତଳା !
ଭରିବ କି ବାଣୀ-ବକ୍ଷେ ନୂତନ କାବ୍ୟ-କୁସୁମର ମାଳା ?
ସାରଦାଚରଣେ 'ଚମ୍ପା' 'ଶତଦଳେ' ବାନ୍ଧିବ "ଅଞ୍ଜଳି"
ଭାବ-'ଦୂର୍ବା' ଭକ୍ତି-'ବିଲ୍ୱ' ସଜାଇ ଗୋ 'ଅର୍ଚ୍ଚନା' ଥାଳି
ଜୋଛନା ତଳରେ ବସି ହୃଦୟର ଗୋପନ "ଉଚ୍ଛ୍ୱାସ"
କ୍ଷୁଦ୍ର 'ଶେଫାଳିକା' କାନେ ଥିରିଥିର କରିବ ପ୍ରକାଶ ।
"କାଳୀବୋହୂ" ନାମ ଶୁଣି ଭ୍ରୂକୁଞ୍ଚନ କରେ ଯେଉଁ ଜାତି
ତା ଭିତରେ ଦେଖାଇଛ ସୁରଲୋକ ଦେବୀର ଶକତି ।
ପତିହୀନା ବିରହିଣୀ ବୁକୁ କେତେ କରେ ହାଇହାଇ
ନିର୍ମମ ସମାଜ ଆଖି ଖୋଲି ତୁମେ ଦେଇଛ ଦେଖାଇ ।
ତାମସ-ଗହ୍ୱରୁ ତୁମେ ରମଣୀକୁ କାଢ଼ିଆଣି ବଳେ
ଧରାଇ ଦେଇଛ ଦେବୀ ! ଜାତ୍ୟ-ଜ୍ୟୋତି ତାର ବେନି କରେ ।
ଶତମୁଖେ କହୁଅଛ ସମାଜରେ କରି ତାର ଠେକ
"ନାରୀ ଶକ୍ତି, ନାରୀ ଦେବୀ—ବିଳାସର ନୁହେଁ କ୍ରୀଡ଼ନକ ।"
ଯାଇଛ ସାହିତ୍ୟ-କୁଞ୍ଜେ ଫୁଟାଇ ଯେ ଶୁଭ୍ର ପାରିଜାତ
ଦେବତାର ଶୁଭାଶିଷେ ରହୁ ତାହା ଚିର ବିକଶିତ ।
ତବ ଗୁଣ ଗାଇବାକୁ କ୍ଷମ କି ମୋ ଦୀନ କଲପନା
ତୁମ ଯଶେ ଗଉରବ କରେ ଆଜି ଉତ୍କଳଲଳନା ।
ଉଜ୍ଜ୍ୱଳ ଆଦର୍ଶେ ତବ ଅନ୍ଧକାର ହୋଉ ଦୂରୀଭୂତ
ତୁମରି ମହତ୍ତ୍ୱ ଗୀତ ଗାଇ ନାଚଉ ନିଖିଳ ଚିତ୍ତ ।

## କବବର ଚନ୍ତାମଣି

କି ଶୁଭ ମୁହୂର୍ତ୍ତେ ଜନ୍ମ ଲଭି ଚିନ୍ତାମଣି !
ହସ୍ତେ ଧରି ଓସମସ୍ତ ବଳିଷ୍ଠ ଲେଖନୀ
ବିମଣ୍ଡି ସାରଦା-ବକ୍ଷ କବିତା-ସୁମନେ
କାଳବଳେ ଗଲ ଚଳି ଅମର ଭୁବନେ ।

ନୀରବ ସଂଗ୍ରାମ ନିତ୍ୟ ରଚି ବ୍ୟାଧିସାଥେ
ଥାପିଗଲ ମନ୍ଦାକିନୀ ଉତ୍କଳ ଜଗତେ ।
ଦୃଷ୍ଟାନ୍ତ ତୁମର କବି ଏ ଦେଶ ମାଟିରେ
ହେବନି ସମ୍ଭବ କେବେ ଦ୍ୱିତୀୟ କାଠାରେ ।

ସୁମଧୁର ତବ କାବ୍ୟ-ପୀୟୂଷମାଧୁରୀ
ପିଅନ୍ତି ଯା ସୁଧୀକୁଳ ପଞ୍ଚାମୃତ ସରି ।
ବିନା ଅଭ୍ୟାସରେ ଯେତେକେ ଲେଖନୀରୁ ତବ
ଝରିଛି ଅମର ଗାଥା ଚିର ଅଭିନବ ।

ଅଟୋଧ ସାଧନା ଆଉ ଏକାଗ୍ରତା ବଳେ
ତୁମରି ଦୃଷ୍ଟାନ୍ତ ତୁମେ କୋବିଦମଣ୍ଡଳେ ।
ଧନ୍ୟ ତବ କଳ୍ପନାର ସୁରଙ୍ଗ ତୂଳିକା
ଅଙ୍କିଦେଲ ସାହିତ୍ୟେ ଯା ଅନବଦ୍ୟ ରେଖା ।

ସୁକଠୋର ସାଧନାର ଜ୍ୱଳନ୍ତ ଆଦର୍ଶ
ତୁମଠାରେ ଏକା କବି ହୋଇଅଛି ଦୃଶ୍ୟ;
ବହୁ ଶ୍ରମ ଫଳେ ସେଣୁ ହେ ବାଣୀସେବକ
ନିର୍ମିଛ ସାହିତ୍ୟର ତୁଙ୍ଗ କୋଣାରକ ।

ଯାଇଅଛି ତୁମ ଯୋଗୁ ଭାରତୀ-ଦୀନତା
ଅପସରେ ଅନ୍ଧକାର ଉଷା କରେ ଯଥା ।
ସ୍ଫଟିକ ସମାନ ତବ କଳ୍ପନାର କାଚ
ଆବୋରି ନେଇଛି ଦେଖେ ପୁରାଣର ଛାଞ୍ଚ ।

ଅତୀତର ବିମୋହନ ଆଖ୍ୟାନମାଳିକା
ତବ ବରେ ନବଭାବେ ଦିଏ ଅଜି ଦେଖା ।
କେଉଁ ରାଇଜରୁ ଭାବରାଶି ତୋଳିଆଣି
ଗାଇଗଲ ଉତ୍କଳର ଗୌରବ କାହାଣୀ ।

ତୁମେ କବି ମିଶି ନାହଁ ମାଟି ଶମଶାନେ
ଲେଲିହାନ ଚିତା-ବୁକେ ଭସ୍ମ ନୁହ ତୁମେ ।
ଯାବତ ଏ ବିଶ୍ୱେ ଥିବେ ଚନ୍ଦ୍ରମା-ତପନ
ତାବତ ଭାସ୍ୱର ଥିବ ତବ ମହାଦାନ ।

## ବାଚସ୍ପତି ଗୋପାଳଚନ୍ଦ୍ର

କଠୋର ସାଧକ ଗୁଣିରତନ,
କି ଶୁଭ ମୁହୂର୍ତ୍ତେ ଲଭି ଜନମ
ଅହରହ ବୁଡ଼ି ଭାଷା-ଅର୍ଣ୍ଣବେ
ରଖିଗଲ ଯେଉଁ କୀରତି ଭବେ
ବିରାଟ ସେ 'ଭାଷାକୋଷ'
ଅନଶ୍ୱର ତୁଙ୍ଗ ଜ୍ଞାନ-ହିମାଚଳ
ଯା ଲାଗି ଧନ୍ୟ ଏ ଦେଶ ।

ଧନ୍ୟ ହେ ଅଚିନ୍ତ୍ୟ କଳ୍ପନା ତବ
ସୃଜିଲ ଯା ବାଣୀ ବର ବିଭବ
ଜ୍ଞାନର ଆକାର ରଚିଲ ତୁମେ
ପୂର୍ବପ୍ରସିଦ୍ଧ ଉତ୍କଳଭୂମେ
ତୁମ ଏକାଗ୍ରତା ସ୍ମରି
ଭାରତୀ-ସେବକ ସାହିତ୍ୟସାଧକ
ସେ ପଦାଙ୍କ ଧରି ।

ବାର୍ଦ୍ଧକ୍ୟ ଜୀବନେ ତାରୁଣ୍ୟ ରେଖା
ଦେଲ ଦେହେ ତବ ନୂତନ ଦେଖା
କଲ ଯେ ପ୍ରଗାଢ଼ ସାଧନା ତୁମେ
କଷ୍ଟ ଜୀବନର ପଶ୍ଚିମ ଯାମେ
ଆନ କାହାରେ ସମ୍ଭବ
ସାହିତ୍ୟ-ଗଗନେ          ଛବି ନାନା ବର୍ଣ୍ଣେ
ସଜାଲ ହେ ନବ ନବ ।

ଦୀର୍ଘ ପଞ୍ଚବିଂଶ ବରଷ ଯାକ
ଲାଗି ଗଢ଼ିଲ ଯେ ଶବ୍ଦ-କୋଣାର୍କ
ଦୂରୁ ଦେଖି ତାହା ସାହିତ୍ୟ-ରଥୀ
ଶିର ପାତ ନାତ ତାଳବେ ନତ
ଶନ୍ତ୍ର ତୁମ କଲପନା
ଅସୀମ ଧୈର୍ଯ୍ୟ          ତେଜ ବଳ ବୀର୍ଯ୍ୟ
ପୁଣି ଜ୍ଞାନ-ଆରାଧନା ।

ଅହେ କର୍ମଯୋଗୀ ଯୁଗବନ୍ଦନ
ସାହିତ୍ୟ-ବନ୍ୟାର ନବ ପ୍ଲାବନ
ଖେଳାଲ ଚୌଦିଗେ ତୁମର ବରେ
ଅସଂଖ୍ୟ ତରୁଣ ତୁମର କରେ
ଲଭିଲେ ଉତ୍ସାହ-ଦୀପ୍ତି
ଅହେ 'ଭାଷାକୋଷ-          ଆଶ୍ରମ'-ତାପସ
ଘେନିଛ ଜାତୀୟ ସ୍ତୁତି ।

'ଭାଷାକୋଷ' ସେ ତ ହୀରକ କୋଷ
ଉଜଳାଲ୍ ଯାହା ଦେଶ ବିଦେଶ
ବିରାଟ ସୁଗ୍ରନ୍ଥୁ ଶବଦ-ତାଜ
ତାର ମଧ୍ୟେ ବିଜ୍ଞ ହେ ପ୍ରହ୍ଲରାଜ
ବର୍ଷିଅଛ ଶରଧନ
ନର ଦେହ ଧରି          କେହ୍ନୁ ଭ୍ରମ ସବ
ଦେଇ ଯାଇ ନାହିଁ ଜ୍ଞାନ ।

ଗୁଣିଗଣାଗ୍ରଣୀ ହେ ବିଜ୍ଞବର
ହୋଇଲେହେଁ ମର ପିଣ୍ଡୁ ଅନ୍ତର
ଭୁଲି କି ପାରିବ ଉତ୍କଳମଣ୍ଡୀ
ଯାଇଛ ଯେ ଜ୍ଞାନ-ଦୀପ ଜଳାଇ
ସାହିତ୍ୟର ସିଂହଦ୍ୱାରେ
ପ୍ରାଣେ ପ୍ରାଣେ ତାର          ବିମଳ ଆଲୋକ
ଖେଳୁଥିବ ପଲ୍ଲୀପୁରେ ।

## ଜ୍ୟୋତର୍ବିଦ୍ ଚନ୍ଦ୍ରଶେଖର

ଯା ସୁଷମା ଖେଳେ ତରୁ ଲତା କୋଳେ
ସୁଶ୍ୟାମଳ ଶସ୍ୟ କେଦାରେ,
ଯା ମହିମା ଫୁଟେ ସ୍ୱଦେଶେ ବିଦେଶେ
କାରୁକଳାପୂତ ମନ୍ଦରେ
ଯା ଅଙ୍କେ ଜନମି ଶତ ଶତ କବ
ଭାରତୀ ମନ୍ଦରେ ଶନି ଗଲେ ଛବ
ମଣ୍ଡି ତାର କୋଳ ହେ ଚନ୍ଦ୍ରଶେଖର
ମିଶିଲ ତାହାର ଦେହରେ ।

ରତନଖଚିତ ସିଂହାସନ ତେଜି,
ଭାରତ-'ଦ୍ୱିତୀୟ ତପନ'
ବାଉଁଶ ନଳରେ ଦେଖିଲ ନିରତେ
ତାରା-ରାଇଜର ସପନ
ଧରାତଳେ ରଖିଗଲ ଯେ କୀରତି
ତା ନିକଟେ ତୁଚ୍ଛ କଣ୍ଠ ବିଭୂତି
ଦେଶବାସୀ ହାତେ ଦେଲ ତବ ଯେଉଁ
ଅମୂଲ୍ୟ "ସିଦ୍ଧାନ୍ତ ଦର୍ପଣ" ।

ଧନ୍ୟ ଉତ୍କଳର　　　　ଅସ୍ତମିତ ରବି
　　ଧନ୍ୟ ହେ ତୁମର ଜନମ
ଚିରଦିନ ପାଇଁ　　　　କରିଲ ଅମର
　　ମହିମିତ ତବ କରମ
　ଦେଶେ ଦେଶେ ବାଜି ତବ ପୁଣ୍ୟ କୀର୍ତ୍ତି
　ପ୍ରକାଶିଲା ଦିନୁ ଦିନ ଦିବ୍ୟଜ୍ୟୋତି
ଧନ୍ୟ ମା ଉତ୍କଳ　　　　ତୁମ ପରି ସୁତେ
　　କୋଳ କରି ତାର ମଣ୍ଡନ ।
ଯଶ-ଅଭିଳାଷୀ　　　　ନ ଥିଲେହେଁ ଋଷି
　　ମହତ ଆଦର୍ଶ ତୁମର
ସଙ୍ଗେ ଅଣିଥିବା　　　　ଅଦ୍ଭୁତ ପ୍ରତିଭା
　　କରିଛି ଜୀବନେ ଅମର
　ପଙ୍କ କୋଳେ ଶୁଭ୍ର ପଙ୍କଜ ପରାଏ
　ଉତ୍କଳ ଭୂଖଣ୍ଡେ ଜନ୍ମ ତବ ସରାଏ
କରିଲ ଯା ତୁମେ　　　　ଅଜ୍ଞାନାନ୍ଧକାରେ
　　ଜ୍ଞାନର ଆଲୋକ ପ୍ରଚୁର ।
ଚିର ଦାରିଦ୍ର୍ୟର　　　　କଷାଘାତୁଁ ତୁମେ
　　ଲଭି ତ ନ ଥିଲ ମୁକତି
ସାରା ନିଶି ବସି　　　　ଯୋଗାସନେ ଧ୍ୟାନ
　　କ୍ଷୟ କରି ଦେହ ଶକତି
　“କରମ ସାଧନ—ଶରୀର ପାତନ”
　ଏହି ମୂଳମନ୍ତ୍ର ଜପି ନିଶିଦିନ
ରଖିଗଲ ତୁମେ　　　　କୋହିନୁର ସମ
　　ସ୍ୱଦେଶେ ଅକ୍ଷୟ କୀରତି ।

ପରଶ ପଥରେ ଝୁଟିହୁଏ ଖରେ
କାନ୍ତିଟି ଯେସନ ହେମର
'ଯୋଗେଶ'ଙ୍କ ପାଇଁ ଏ ନିଖିଳ ମହୀ
ବୁଝିଲା ମହତ୍ତ୍ୱ ତୁମର
ମାଜିଲା ତୁମର ପ୍ରଗାଢ଼ ସାଧନା
ଦୂର ଗୋଲକର ଜ୍ୟୋତିଷ ଗଣନା
ତୁମ କୃତି-ରତ୍ନ ଗୁନ୍ଥା ଚିରନ୍ତନ
ସୃଷ୍ଟି-ସୂତ୍ରେ କାଳ-ଦାମର ।

କେଉଁ ଦୂର ଦେଶେ ଗଲ ଚାଲି ଅହା
ଭାସ୍ୱର ଜ୍ୟୋତିଷ-ଭାସ୍କର
ସ୍ୱଦେଶ ଗୌରବ ଉତ୍କଳକଣ୍ଠ
ସାଧନା-ସରସୀ-ପୁଷ୍କର
କିଏ ଜାଣେ କେବେ ବନ୍ଧୁ କୃପା ଫଳେ
ଦେହ ଧରି ପୁଣି ଏ ଦୀନ ଉତ୍କଳେ
ଆସିବ ହେ ଦେବ ସ୍ୱପ୍ନ ସତ୍ୟ ହେବ
ହେ ମନୀଷୀ ଚନ୍ଦ୍ରଶେଖର !

## କର୍ମବୀର ଗୌରୀଶଙ୍କର

କି ମାହେନ୍ଦ୍ର ଯୋଗେ ଜନ୍ମି ହେ ଗୌରୀଶଙ୍କର
ଅରଜିଲ୍ ମର ଦେହେ କୀରତି ଅମର ।
ଆଲୋକ-ବର୍ତ୍ତିକା ଧରି ଅନ୍ଧାରି ଉତ୍କଳେ
ଦେଖାଇଲ୍ କର୍ମ-ପଥ ଭାବୀ ବଂଶଧରେ ।।

କର୍ମ ସଙ୍ଗେ ରଚି ନିତ୍ୟ ନୀରବ ସଂଗ୍ରାମ
ସାର୍ଥକ କରିଛ ତୁମ କର୍ମବୀର ନାମ ।
ସାହିତ୍ୟ-ସାଗରେ ତୁମେ ଭାଷା-ନଉକାର
ପ୍ରତ୍ୟକ୍ଷରେ ଥିଲ ଏକ ବିଜ୍ଞ କର୍ଣ୍ଣଧାର ।

ହେ ବରେଣ୍ୟ ସାମ୍ବାଦିକ ଗଉରୀଶଙ୍କର
ଦେଶ ଆଉ ବିଦେଶର ନାନା ସମାଚାର
'ଦୀପିକା' ସମ୍ବାଦପତ୍ର କରି ସମ୍ପାଦନା
କରିଛ ଉଜ୍ଜ୍ୱଳ ଜ୍ଞାନାଲୋକ ବିକିରଣ ।

କଣ୍ଠାଗତପ୍ରାଣା ଦୀନା ଓଡ଼ିଆ ଭାଷାର
ଥିଲଟି ହେ ତୁମ୍ଭେ ଧନ୍ୱନ୍ତରି ପରକାର ।
ସ୍ୱଦେଶେ ଆଜି ହେ ସେହି ସୁକୃତର ଫଳେ
ସ୍ମରନ୍ତି ତୁମକୁ ବିଜ୍ଞ ଦାୟାଦସକଳେ ।

ନିସର୍ଗ-ମାଧୁରୀହୀନ ନଗରୀ-ଉରସେ
ହସଇ ଯେ ଉପବନ *ହରଷ ରଭସେ
ଅରପି ବିପୁଳ ମୋଦ ସନ୍ଧ୍ୟ ସମୀରଣେ
ତା ମଧ୍ୟେ ତୁମର ସ୍ମୃତି ଜାଗେ ଅଜ୍ଞ ମନେ ।

ବହୁଗୁଣଧୀର ସନ୍ନ୍ୟାସୀ ସମାନ
ଯାପି ଆଡ଼ମ୍ବରହୀନ ସରଳ ଜୀବନ
ଦେଇଛ ତୁମେ ନିଜ ସାଧୁ ଚରିତ୍ର
ମହତ ଦୃଷ୍ଟାନ୍ତ ଆହେ ଯୋଗଜନ୍ମା ବୀର !

ଅମର ସମ୍ପଦ ଯାହା ଯାଇଅଛ ରଖି
ଉତ୍କଳଭୁବନେ, ନିତ୍ୟ ତାହାରେ ନିରେଖି
ପ୍ରଣମି ଉଦ୍ଦେଶ୍ୟେ ତବ ଏ ଓଡ଼ିଆ ସୁତେ
ବାହିବେ ସ୍ୱଦେଶ-ତରୀ ଦୂର ଲକ୍ଷ୍ୟ-ପଥେ ।

* କଟକର 'ଗୌରୀଶଙ୍କର ପାର୍କ'

# ନାଟ୍ୟକାର ରାମଶଙ୍କର

ବିଶ୍ୱ-ରଙ୍ଗମଞ୍ଚେ ମୃତ୍ୟୁ—
        ଯବନିକା ଟାଣି ହେ କବି
ଯାଇଅଛ ସାହିତ୍ୟର
        ଆଙ୍କି କେତେ ମଧୁମୟ ଛବି ।
ଥିଲ ତୁମେ ଋଷିପ୍ରାଣ
        ଉତ୍କଳର ଭାରତୀ-ଆଶ୍ରମେ
ଧ୍ୟାଉଥିଲ ନିଶିଦିନ
        ମାତୃମନ୍ତ୍ର ବସି ଯୋଗାସନେ ।
ଆଦ୍ୟ ଲେଖି ଉପନ୍ୟାସ
        ଭରିଅଛ ବାଣୀ-ଗନ୍ତାଘର
ତୁମେହିଁ ଜନକ ପୁଣି
        ଓଡ଼ିଶାରେ ନାଟ୍ୟ ସାହିତ୍ୟର ।
ସମସ୍ତଙ୍କୁ ଜୀବନରେ
        କରି ନିଜ ପ୍ରାଣଠାରୁ ପ୍ରିୟ
ଅଗାଧ ସାଧନା ବଳେ
        ଯାଇଅଛ ଲେଖି ଅହରହ ।
ନମନୀୟ ନାଟ୍ୟକଳା
        ବଞ୍ଚିଥିବ ଯାବତ ଏ ଭୂମେ
ନମସ୍ୟ ରହିବ ଦେବ !
        ଏ ଜାତିର ମଥାମଣି ତୁମେ ।

# ଦେବାତ୍ମା ପ୍ୟାରୀମୋହନ

ନିକୃଷ୍ଟ ଶୁକ୍ତି-ଗରଭେ
ବହୁମୂଲ୍ୟ ମୁକୁତାର ସମ
ଦରିଦ୍ର କୁଟୀରକୋଣେ
ହେ ପୁଣ୍ୟାତ୍ମା ତୁମର ଜନମ ।
ରୋଗୀରେ ଦେଇଛ ପଥ୍ୟ
ବିପନ୍ନର ଶୁଣିଛ ଗୁହାରି
ଫେରିନି ବିଫଳେ କେବେ
ତବ ପ୍ରାଣୁ ଡାକଟି କାହାରି !
ଅନିତ୍ୟ ଜୀବନ ଭବେ,
କାଳ-ସ୍ରୋତେ ଯାଏ ଦିନ ଭାସି
କାନ୍ଦଇ ଉତ୍କଳ କିନ୍ତୁ
ଗୁଣ ତବ ସ୍ମରି ଦିବାନିଶି ।
ଯେ ପ୍ରତିଭା ଘେନି ତୁମେ
ଜନ୍ମିଥିଲ ଦରିଦ୍ର ଉତ୍କଳେ
ତା ଯୋଗେ ମୃତ୍ୟୁକୁ ତୁମେ
ଜିଣିଲ ଏ ଧରଣୀର ତଳେ ।
ଲେଖିଗଲ "ଓଡ଼ିଶାର
ଇତିହାସ" ଧରି ଯେଉଁ ତୁଳୀ
ପ୍ରକଟାଏ ଆଜି ତାହା
ଅତୀତର ଜାତୀୟ ମୂରତି ।

ଅଦମ୍ୟ ପ୍ରଚେଷ୍ଟା ଫଳେ
ଥାପିଗଲ ଶିକ୍ଷା-ଅନୁଷ୍ଠାନ
ଅଗଣିତ ଅନ୍ତେବାସି—
କଣ୍ଠେ ଆଜ ଉଠେ ତବ ଗାନ ।
ଦରିଦ୍ର ସନ୍ତାନ ହୋଇ
ସ୍ୱଦେଶେ ଯା କରିଗଲ ଦାନ
ଲଜ୍ଜିତ ହୁଅଇ ତହିଁ
ନୃପତିର କୀର୍ତ୍ତି-ସମ୍ମାନ ।
ମୁକୁଟ ନୁଆଏ ମଥା
ଚିରଦିନ ବୀରତ୍ୱର ପଦେ
ତୁମ କୃତ ମୂର୍ତ୍ତି ଆଜ
ଉତ୍କଳର ଜାତୀୟ ସମ୍ପଦେ ।

## ଆଦର୍ଶରାଜା ସୁଢ଼ଳଦେବ

ବାମଣ୍ଡାର ଅଧିପତି ହେ ସୁଢ଼ଳଦେବ
ଧନ୍ୟ ହେଲା ତୁମ ଯୋଗେ ରାଜସିଂହାସନ
ଭରିଥିଲେ ଲକ୍ଷ୍ମୀ ତବ ଭଣ୍ଡାରେ ବିଭବ
ବାଣୀଙ୍କର ଥିଲ ପୁଣି ସୁଯୋଗ୍ୟ ସନ୍ତାନ ।

ଧନ୍ୟ କରି ଶୁଭ ଜନ୍ମ ତବ ରାଜକୁଳେ
ଯୁଗ୍ମଦେବୀପଦ ତୁମେ କରି ଆରାଧନ
ଦୀପ୍ତ ସୂର୍ଯ୍ୟ ସମ ରାଜି ଉତ୍କଳ-ଅମ୍ବରେ
ଫୁଟାଇଲ କବିକୁଳ-ମାନସ-ନଳିନ ।

ଏକେତ କନକଲତା ସ୍ୱଭାବେ ସୁନ୍ଦର
ଦୁଜେ ଶୋଭେ ହୀରାପୁଷ୍ପେ ଯଥା ଶତଗୁଣ।
ତେସନ କିରୀଟ ପାଶେ ଶୋଭେ ମନୋହର
ହେ ରାଜନ କରଧୃତ ବାଣୀ ସ୍ୱର୍ଣ୍ଣବୀଣା ।

ହେ କବି, ନିଜର ମଧ୍ୟ ଅଦରଶାଳେକେ
କରି ରାଜପୁରୀ କବିପୁରେ ପରିଣତ
ଆର୍ଥିକ ସାହାଯ୍ୟ ଦାନେ ଭାରତୀସେବକେ
ବହୁଗୁଣେ ସଂଖ୍ୟା ତାଙ୍କ କଲ ବିବର୍ଦ୍ଧିତ ।

ଶୁଣିଥିଲେ 'ବାପୁଁ ଜାତି ବାପଣିଆ' ସମ
ସୁଯୋଗ୍ୟ ସନ୍ତାନ ତବ ଶ୍ରୀ ସଚ୍ଚିଦାନନ୍ଦ
ପବିତ୍ର ପଦାଙ୍କ ଯତ୍ନେ ଅନୁସରି ତୁମ
ରହିଲେ ତୁମରି ସଙ୍ଗେ ହୋଇ ଚିରବନ୍ଦ୍ୟ ।

ସାହିତ୍ୟାନୁରାଗ ତବ ଶୁଣି ବନ୍ଧୁ ବୃନ୍ଦ
'ଦ୍ୱିତୀୟ ବିକ୍ରମାଦିତ୍ୟ' ଭାବ ହେ ତୁମରେ
ନିରାଶେ ବାହୁଡ଼ି କେହି ନ ଥିଲେ ସେ ପୁରୁ
ଯେତେବେଳେ ଯେପାଇଁ ପ୍ରାର୍ଥୀ ଥିଲେ ତୁମଠାରେ ।

ସ୍ୱଦେଶହିତୈଷୀ ତୁମେ ଗୁଣିଙ୍କ ରାଜନ
କୋଟି ପ୍ରାଣେ ସ୍ମୃତି ରଖି କରିଛ ପ୍ରୟାଣ ।

## କବି ବଳଭଦ୍ର

ସାରଦା-ମନ୍ଦିର ଅଳଙ୍କୃତ କରି
କବିତା-କୁସୁମ-ଭରେ ।
ଗଢ଼ି ଅଛ କବି ହେ ଭଞ୍ଜକୁମାର !
ସାହିତ୍ୟର ଗଡ଼ଦ୍ୱାରେ ।

ଯେଉଁ ସୁଦୁର୍ଲ୍ଲଭେ ଅଯତ୍ନ ବିଭବ
ରଖିଗଲ କବିମଣି
କାଳ କାଳ ପାଇଁ ଏ ଜାତି ଗରବ
ଗୌରବ ତାହାକୁ ଘେନି ।

ରାଜଭୋଗସ୍ପୃହା ତେଜି ସୁଧୀବର
କଳପନା-କୁଞ୍ଜ ତଳେ
କବିତା-ସପନେ ରହିଲ ବିହ୍ୱଳ
ଭାରତୀ-କରୁଣାବଳେ ।

ଏହି ଦେଶେ ଜନ୍ମି କେତେ ଧନୀ ମାନୀ
ଗଲେଣି ତ କାଳବଳେ
ଏ ଜାତିର ସ୍ମୃତି— ଫଳକେ କାହାରି
ଲେଖା ନାହିଁ ନାମ ତଳେ ।

କିନ୍ତୁ ତୁମ ଦାନ   କାବ୍ୟ-ପୁଷ୍ପଦାମ
ସାରଦା-ଉରସେ ଲମ୍ବି
କାଳ କାଳକୁ ତ   ରଖିଥିବ ନାମ
'ବଳଭଦ୍ର ରାଜକବି' ।

ଯେ ରଥେ ବସିଲେ   କବି 'ଦୀନକୃଷ୍ଣ'
'ଅଭିମନ୍ୟୁ' 'ଉପଇନ୍ଦ୍ର'
ସେହି ରଥେ ବସି   ଅମର ଭୁବନେ
ଯାଇଛ ହେ 'ବଳଭଦ୍ର' !

ଲେଖନୀ ମୁନରେ   ନାହିଁ ପାଏ ଭାଷା
ବର୍ଣ୍ଣିବାକୁ ତବ ଗୁଣ
ଆଲୋକ ତୁମର   ସାହିତ୍ୟ ଗଗନେ
ନିରତେ ଦେଦୀପ୍ୟମାନ ।

## ମହାରାଜ ଶ୍ରୀରାମଚନ୍ଦ୍ର

ରବିବଂଶମଣି ଦ୍ୱିତୀୟ ଶ୍ରୀରାମ
ଉଇଁ ବୁଡ଼ିଅଛ ସ୍ୱର୍ଣ୍ଣଭାନୁ ସମ ।
ନବଯୁଗାଲୋକସଞ୍ଚାରକ ରାଜ୍ୟ,
ଫରଙ୍ଗୀପାଳନେ ନିବେଶି ହୃଦୟ
ଦେଶ ଦଶ ହିତେ ହୋଇ ଦୃଢବ୍ରତୀ
ସାର୍ଥକ କରିଛ ତବ ରାଜଛତୀ ।
ହୋଇ ତୁମେ ଲକ୍ଷ ବିଳାସ ଅଧୀଶ
ବିଳାସରେ କରିଥିଲ ନିଜ ଦାସ ।
ନୃପଶିରୋମଣି ପରଜାରଞ୍ଜକ
ରଖିଥିଲ ତୁମେ ରାମରାଜ୍ୟ ଠେକ ।
ଚେତାଏ ଆଜି ତା ଉତ୍କଳ-ପରାଣେ
ଥିଲେ ସୁଦ୍ଧା ତୁମେ ଅମର ଭୁବନେ ।
ମାତ୍ର ନାହିଁ ଆଶା ତୁମସରି ଜଣେ
ଜନମି ଏ ଖଣ୍ଡ ଉତ୍କଳଭୁବନେ
କରିବ ଜନମଭୂମି ପବିତ୍ର
ଦେଖାଇ ସକଳେ ପ୍ରଗତିର ପଥ ।

କି ଅଦ୍ଭୁତ ଅଟେ କାଳର ରହସ୍ୟ
ଆଜିସେ ଯା ତୁମ ମୃତ୍ୟୁ ଇତିହାସ ।
କାହାଣୀ ପରି ଯା ପ୍ରତେ ହୁଏ ମନେ
ସତ୍ୟ ହେଲା ସେ ତ ତୁମରି ଜୀବନେ ।

ମରଣ ପୂର୍ବରୁଁ ହେ ମନୀଷିବର
ଦୁର୍ଲଭ ତୁମର ମହତପ୍ରାଣରେ
ଦେଇଗଲ ଯେଉଁ ଜ୍ୱଳନ୍ତ ଅଭାସ
ସଜ୍ଜକୁଳେ ତାହା ମହା ଅଦରଣ
ଦେଶବାସୀ ପକ୍ଷେ ତଥା ନବ ଶିକ୍ଷା
ବରେଣ୍ୟ ହେ ଦେଶଜନନୀର ଟୀକା !

ସଜ୍ଜକୁଳେ ତୁମ୍ଭେ ଯୋଗ୍ୟ ଅବତଂସ
ଅଜ୍ଞାନ-ତମିର କରିଅଛ ଧ୍ୱଂସ ।
କାଳବଶେ ତେଜି ଅକାଳେ ଶରୀର
ଯଶୋଦେହେ ତୁମେ ରହିଛ ଅମର ।

## ସମ୍ପାଦକ ନୀଳମଣି

ସ୍ୱଦେଶପ୍ରେମିକ ସାହିତ୍ୟରସିକ
ଅହେ ନୀଳମଣି ବିଦ୍ୟାରତନ !
ସୁବିମଳ ଯଶ ରହିଥିବ ତବ
ଥିବେଟି ଯାବତ ତାରା ତପନ ।
ତାପସ ଧରମ ବୀରର କରମ
ଦେଖାଇଯାଇଛ ସାଧନା ବଳେ
ଯୁଗେ ଯୁଗେ ତୁମେ ପାଉଥିବ ପୂଜା
ଉତ୍କଳ ଭବିଷ୍ୟ ସୁତମଣ୍ଡଳେ ।
ଧନ୍ୱନ୍ତରୀ ସମ ରୋଗୀଙ୍କ ସେବାରେ
ଢାଳି ଦେଉଥିଲ ପରାଣ ମନ
ଲୋଭ ଅହଙ୍କାର ହୃଦୟରୁ ତବ
କରିଥିଲେ ବହୁ ଦୂରେ ବସତି ।
ସ୍ରୋତସ୍ୱିନୀ-ସ୍ରୋତ ସମ ମହାମନା
କର୍ମେ ରତ ଥିଲ ଆନନ୍ଦେ ଭାସି
ମହର୍ଷି ସମାନ ଯାପୁଥିଲ ଦିନ
ସାହିତ୍ୟସେବାରେ ମନ ନିବେଶି ।
ସ୍ୱଦେଶପ୍ରେମର ଧରମ ଅତୀବ
ସମାଜସଂସ୍କାରେ ଢାଳିଲ ମତ
ତବ ଜ୍ଞାନ-ଧୂପ "ଉତ୍କଳ-ମଧୁପ"
ସୌରଭେ ଭରିଲା ଏ ଦେଶ ଚିତ ।

ସଂପାଦକ, ବକ୍ତା— ଜନମ ଉତ୍କଳେ
    ରହିଲ ହେ ତୁମେ ଶିର ନମସ୍ୟ
ଦୂରୁ ଥାଇ ଢାଳ ହେ ନିର୍ଭୀକ ବୀର
    ଏ ଦେଶ-ଶିରସେ ଶୁଭ ଅଶିଷ ।
ମର ଦେହେ ତୁମେ ରହିଲ ଅମର
    ଦେଶ ମାଟିତଳେ, ଜାତିର ପ୍ରାଣେ
ହେଉ ମୁଖରିତ ଖିଳ ଏ ଉତ୍କଳ
    ତବ ମନ୍ତ୍ରୁ ସ୍ତୁତି-ସଂଗୀତଗାନେ ।

## କାନ୍ତକବି ଗୋପାଳକୃଷ୍ଣ

ଖେଳଇ ଯେ ମଧୁ କାନ୍ତ ପଦାବଳି
ଏ ଦେଶ ବାତେ
ଫେରଇ ଗୋଧନ ଗାଏ ତା ଗୋପାଳ
ଗୋଧୂଳି ପଥେ ।
ସେ ଗୃହୁ ସଙ୍ଗୀତ ମୋହନ ଅବେଶେ
ଉଠଇ ମାତି
ତରୁ ଲତା ଫୁଲ ତରୁଣ ପଲ୍ଲବ
କଅଁଳ ଛାତି ।
ଗହ୍ୱର ଥିଲ ହେ ଗୋପାଳକୃଷ୍ଣ
ତୁମେ ଯେ ଦିନ
ଅଭାଗୀ ଉତ୍କଳ-ଜନନୀର କୋଳ
କଲ ମଣ୍ଡନ—
କେଉଁ ସଉଭାଗ୍ୟେ ଉଠିଲ ମାଆର
ବିପୁଳ ବୁକ
କହି କି ପାରିବ ସେ-ଦେଶେ ଥାଇ ଯେ
ସେ ଦିନ ସୁଖ ?
କୋଟିକେ ଗୋଟିଏ ମିଳିବା କଠିନ
ତୁମ ହୃଦୟ
ତୁମର ହୃଦୟ ସାଥେ ଯିବା ତୁମେ
ହେଲ ବିଲୟ ।

ତୁମ୍ଭ ସବୁ ଏକା ତୁମେହିଁ ହେବ କବି
ଦେଶ ପାଇଁ ଦିନା
ହସାଇ ତୁମଠେ ଉତ୍କଳ-ଭାରତୀ
ଏସନ ଦାନା ।
ତରଳ ମଧୁର କାନ୍ତ ମନୋହର
ସରଳ ଗୀତ
ନିର୍ଝରିଣୀ ସମ ନୃତ୍ୟଛନ୍ଦେ ତବ
କବିତ୍ୱ ଗତ ।
ଶୁଣିଲେ ସେ ବାଣୀ ଶିଶୁ ହୁଏ ଭୋଳ
ହୃଦର ଫୁଟେ
ଅବସନ୍ନ ଭାବ ଅଳସ ପବନେ
ସପନ ଫୁଟେ ।
ସେ ବଂଶୀ ନାଦେ ତେଜଇ ତଳପ
ବିଳାସୀ ଜନ
ତରୁଣୀ ଦରଜେ ମଦାଳସ ଗତି
ଦୁର୍ଜୟ ମାନ ।
ଏସନ ତୁମ୍ଭର ଗୀତ-ଗୌରବ
ଛନ୍ଦର ସାଥ
ଅଧୀର ପବନେ ଛୁଟାଏ ମନ୍ଦର
ମଧୁର ରସ ।
ଯାଇଛ ଯା ଦେଇ ଦୁନିଅ-ଦଜାରେ
ଅମୂଲ ଡାଳା
ସେହୁ ଟେକ ଅଜ ଓଡ଼ିଅପୁଅର
ହୋଇଛନ୍ତି ସାଧା ।

## ପ୍ରିୟଦର୍ଶୀ ବ୍ରଜସୁନ୍ଦର

ଅତୁଳ ସଂପଦକେତେ
ଯଦି ଅବା ହୋଇଥିଲ ଜାତ
ବିଳାସ ବ୍ୟସନେ କିନ୍ତୁ
ମଜ୍ଜି ନାହିଁ ତବ ଧୀର ଚିତ୍ତ ।
ଲାଗିଥିଲା ପ୍ରାଣ ତବ
ଅନୁବ୍ରତେ ଭାରତୀ-ସେବାରେ
ତରୁଣ-ଭାବୁକ-ହୃଦେ
ନବ ନବ ପ୍ରେରଣା ଦେବାରେ ।
ମାନସେ ନ ରଖି ତିଳେ
ପାର୍ଥିବ ଏ ସଂପଦର ମୋହ
ବୁହାଇଦେଇଛ ଦେଶେ
ପ୍ରଗତିର ସାରସ୍ୱତ-ସୁଅ ।
ଜାତିର ଉନ୍ନତି କେନ୍ଦ୍ରେ
ପ୍ରତିଫଳେ ସାହିତ୍ୟ-ଦର୍ପଣେ
ପ୍ରତ୍ୟକ୍ଷେ ତା ଦେଖାଇଲ
'ମୁକୁର'ର ଶୁଭ ସମ୍ପାଦନେ ।
ନବୀନ ଉତ୍ସାହେ ମାତି
ଚଳେ ତାର ଅସଂଖ୍ୟ ତରୁଣ
ନବ ଯୁଗେ ନବାଲୋକ
ସାଧି ଦେଶେ କଲେ ବିକିରଣ

ପ୍ରିୟଭକ୍ତେ ସବଜନେ
ସମଭାବେ ଶତବ ସେତନହ
କରୁଥିଲ ପ୍ରୋତ୍ସାହିତ
ବାଣୀସେବାପାଇଁ ଅହରହ ।
ପଞ୍ଚଶିଷ୍ୟ ରୂପେ ତୁମେ
ଅନୁସରି 'ମଧୁ' ମନ୍ତ୍ର ପଥ
ଉତ୍କଳ-ଏକୀକରଣେ
କରିଥିଲ ଜୀବନର ବ୍ରତ ।
ପୂର୍ଣ୍ଣାଙ୍ଗ-ଜନନୀ-ମୁଖ
ଦେଖିବାକୁ ଚିନ୍ତା କଲ ଥାଲ
ନ ପୂରୁଣୁ ଆଶା ତବ
କାହୁଁ ଅସି ଝାଣିନେଲା କାଳ ।
ସ୍ୱର୍ଲୋକୁଁ ଥାଇ ହେ ଦେବ !
ବନ୍ଦନୀୟ 'ମଧୁ' ଗୁରୁ ସାଥେ
ଆଶୀର୍ବାଦ-ପୁଷ୍ପ ବୃଷ୍ଟି
କର ଏହି ଦେଶବାସି-ମାଥେ ।
ବୃହତ୍ତର ଉତ୍କଳର
ନର ନାରୀ, କୋଟି ସୁତ ସୁତା
ବନ୍ଦ ଦେଶମାତା-ପଦ
ସମକଣ୍ଠେ ଗାଇ ତବ ଗାଥା
ଦେଖନ୍ତୁ ତବ ଆଦରଶ
ଲାଗିଯାନ୍ତୁ ସ୍ୱଦେଶ-କରମେ
ତୁମର ଉଦ୍ଦେଶେ ଦେବ !
ଭକ୍ତିଭରେ ସ୍ମରୁଛୁଁ ପ୍ରଣମେ ।

## ବାଣୀଭୂଷଣ ମୃତ୍ୟୁଞ୍ଜୟ

ସଂସ୍କୃତସାହିତ୍ୟ-ସିନ୍ଧୁ କରିତ ମନ୍ଥନ
ପାଇଲ ଯେ ବହୁମୂଲ୍ୟ ବିମଳ ରତନ
ଗୁନ୍ଥି ତହିଁ ହାର ଦେଲ ବୀଣାପାଣି-ଗଳେ
ସ୍ୱାଭାବିକ ଜ୍ୟୋତି ତାର ନିତ୍ୟ ପ୍ରତିଫଳେ ।
ଯେ ଜ୍ୟୋତି ସ୍ପର୍ଶେ ଆଧୁନିକ ସୁଧୀଗଣେ
ପ୍ରାଚୀନ ସାହିତ୍ୟ-କୋଷ ଝଲସେ କେମନେ !
ତୁମେହିଁ ଖୋଲି ଦେଇ ତାର ସୁଦୃଢ କବାଟ
ପ୍ରାଚୀନ ସାହିତ୍ୟରାଜ୍ୟ ଦେଖାଇଲ ବାଟ ।
ଚଳେଣୀ ତବ ପାଠେ ଅନ୍ୱେଷୀଗଣ
ଶିଖାଇଛ ଯେଣୁ ତାଙ୍କୁ ବସ୍ତୁଛ ଲିଖନ ।
ସ୍ଫୁରନ୍ତି ତୁମକୁ ଦେଖୁ ଅଜ ଶିଷ୍ୟକୁଳ
ସାହିତ୍ୟସାଗରେ ଯେତେ ଧରିଛନ୍ତି କୂଳ ।
ବିବିଧ ପୁସ୍ତିକାବଳୀ କରି ପ୍ରଣୟନ
ଶିକ୍ଷାରାଜ୍ୟ ସମୋନ୍ନତି କରିଛ ସାଧନ ।
ଏ ଦେଶର ଦୁର୍ଭାଗ୍ୟକୁ ମାନ ନିଷ୍ଠୁରକାଳ
ଭାବୀ ଆଶା-ସ୍ୱପ୍ନ ତୁମ କରିଲା ବିଫଳ ।
ଅକାଳେ ଯଦିବା ଭାଗ୍ୟ ହୋଇଅଛି ବାମ
ତଥାପି ସାର୍ଥକ ତୁମ ମୃତ୍ୟୁଞ୍ଜୟ ନାମ ।
ତିରୋଭାବ ଯେତେହେଁ ତବ ହୁଅଇ ପ୍ରତୀତ
ଉତ୍କଳର ପକ୍ଷେ ଏକ ଅପୂରଣ କ୍ଷତ ।

